# ମୋ' କଥା,
# ମୋ, ବ୍ୟଥା



ଶ୍ରୀଯୁକ୍ତ ଗୁଣନିଧି ମହାପାତ୍ର

# ମୋ' କଥା, ମୋ' ବ୍ୟଥା
(ଆତ୍ମ ଜୀବନୀ)

ଲେଖକ :
**ଶ୍ରୀଯୁକ୍ତ ଗୁଣନିଧି ମହାପାତ୍ର**

ପ୍ରଥମ ପ୍ରକାଶ :
**ବିଜୟା ଦଶମୀ-୨୦୦୫**

ପ୍ରକାଶକ :
**କେଦାରନାଥ ଗବେଷଣା ପ୍ରତିଷ୍ଠାନ**
କେଦାରଗୌରୀ ମାର୍ଗ
ଭୁବନେଶ୍ୱର - ୨

ଅଳଙ୍କରଣ ଓ ଅକ୍ଷର ସଜ୍ଜା :
**କିରଣ କମ୍ପ୍ୟୁଟର୍ସ୍**
କେଦାରଗୌରୀ ମାର୍ଗ
ଭୁବନେଶ୍ୱର - ୨

ମୁଦ୍ରଣ :
**ଆର୍ଟ ସେଣ୍ଟର,**
ଭୁବନେଶ୍ୱର-୧୮

ପ୍ରଚ୍ଛଦ ଶିଳ୍ପୀ :
**ଶ୍ରୀ ଦୁର୍ଗାଚରଣ ପଣ୍ଡା**

ମୂଲ୍ୟ : ପଚାଶ ଟଙ୍କା ମାତ୍ର

**MO KATHA MO BYATHA**
(Memoir)
Writer :
**Sri Gunanidhi Mohapatra**

First Edition :
**Sri Gundicha-2005**

Publisher :
**Kedaranatha Gaveshana Pratisthana,**
Kedargouri Marg
Bhubaneswar-2

Design & DTP :
**Kiran Computers**
Kedargouri Marg
Bhubaneswar-2

Printed by :
**Art Centre**
Bhubaneswar-18

Cover Art by :
**Sri Durga Charan Panda**

Price : **Fifty Rupees** only

# ସ୍ମୃତିଲେଖା

ଐତିହାସିକ କେଦାରନାଥ ମହାପାତ୍ର ଥିଲେ ଓଡ଼ିଆ ଜାତିର ପ୍ରାତଃ ସ୍ମରଣୀୟ ବରପୁତ୍ର । ଓଡ଼ିଶାର ଇତିହାସ, ସାହିତ୍ୟ, ସଂସ୍କୃତି, କଳା, ଭାସ୍କର୍ଯ୍ୟର ପୁନରୁଦ୍ଧାର ଓ ଗବେଷଣା କାର୍ଯ୍ୟରେ ସେ ସାରାଜୀବନ ଅତିବାହିତ କରିଥିଲେ ଏବଂ ତାଙ୍କରି ଆଜୀବନ ଉଦ୍ୟମ ଫଳରେ ଓଡ଼ିଆ ଜାତିର ଗୌରବାବହ ଐତିହ୍ୟର ପୁନରୁଦ୍ଧାର ସମ୍ଭବ ହୋଇଥିଲା । ଓଡ଼ିଆଜାତିର ସ୍ୱାଭିମାନ ପ୍ରତିଷ୍ଠାପାଇଁ ସେ ସାରା ଜୀବନ ଉଦ୍ୟମ କରିଥିଲେ । ବିଦେଶୀ ତଥା ଅଣଓଡ଼ିଆ ଗବେଷକ ଓ ଲେଖକଙ୍କ ଦ୍ୱାରା ପ୍ରଚାରିତ ଓଡ଼ିଆ ଜାତିର ଜାତୀୟ ଓ ସାଂସ୍କୃତିକ ଇତିହାସର ଭ୍ରମପୂର୍ଣ୍ଣ ପ୍ରଚାରକୁ ସତ୍ୟ ଓ ତଥ୍ୟପୂର୍ଣ୍ଣ ପ୍ରମାଣଦ୍ୱାରା ସେ ଖଣ୍ଡନ କରି ଗବେଷକମାନଙ୍କ ଆଗରେ ଓଡ଼ିଆ ଜାତିର ଗୌରବକୁ ପୁନଃ ପ୍ରତିଷ୍ଠା କରିବାରେ ସଫଳ ହୋଇଥିଲେ । ସତ୍ୟର ପ୍ରତିଷ୍ଠା ପାଇଁ ସେ ଯେପରି ସଫଳ ଉଦ୍ୟମ କରିଯାଇଛନ୍ତି ତା'ର ପଟାନ୍ତର ନାହିଁ । ଓଡ଼ିଶା ଓ ଓଡ଼ିଆ ଜାତିର ଗୌରବାବହ ପରମ୍ପରା ଓ ସାଂସ୍କୃତିକ ବୈଭବକୁ ସେ ଓଡ଼ିଆ, ଇଂରାଜି ଓ ହିନ୍ଦୀ ଭାଷାରେ ଲିଖିତ ଶତଶତ ପ୍ରବନ୍ଧ ଏବଂ ଅର୍ଦ୍ଧଶତାଧିକ ଗ୍ରନ୍ଥରେ ଲିପିବଦ୍ଧ କରିଯାଇଛନ୍ତି । ଓଡ଼ିଶାର ସାରସ୍ୱତ ଜଗତରେ କେଦାରନାଥ ଥିଲେ ଜଣେ ସଫଳ ଗବେଷକ । ଓଡ଼ିଶାର ଗୌରବାବହ ସାଂସ୍କୃତିକ ଜୀବନକୁ ଅନୁଶୀଳନ କରିବାପାଇଁ ସେ ଗବେଷକମାନଙ୍କୁ ଉତ୍ସାହିତ କରିଥିଲେ । ତାଙ୍କରି ଉଦ୍ୟମ ଫଳରେ ଓଡ଼ିଶା ଇତିହାସରେ ଥିବା ତ୍ରୁଟି ବିଚ୍ୟୁତି କ୍ରମଶଃ ସଂଶୋଧିତ ହେଉଛି ।

ପଣ୍ଡିତ ନୀଳମଣି ମିଶ୍ର ଥିଲେ କେଦାରନାଥଙ୍କ ଶିଷ୍ୟ-ସହଯୋଗୀ ଓ ସହକର୍ମୀ । ରାଜ୍ୟ ସଂଗ୍ରହାଳୟରେ କାର୍ଯ୍ୟ କରୁଥିବାବେଳେ ଉଭୟ ଓଡ଼ିଶାର ସାହିତ୍ୟ ଓ ସଂସ୍କୃତିର ପୁନରୁଦ୍ଧାର ପାଇଁ ମିଳିତ ଭାବେ ସେ ବହୁ ଉଲ୍ଲେଖନୀୟ କାର୍ଯ୍ୟ କରିଯାଇଛନ୍ତି । କେଦାରନାଥଙ୍କ ଦେହାବସାନ ପରେ ତାଙ୍କରି ସ୍ମୃତିରେ ଗବେଷଣା ପ୍ରତିଷ୍ଠାନ ପ୍ରତିଷ୍ଠା ହେଲା । ଏହାର ମୁଖ୍ୟ ସ୍ଥପତିଥିଲେ ପଣ୍ଡିତ ମିଶ୍ର । ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ପ୍ରତିଷ୍ଠାନର ଉତ୍ତରୋତ୍ତର ଉନ୍ନତି ପାଇଁ ସମ୍ପାଦକ ଭାବେ କାର୍ଯ୍ୟ କରିଥିଲେ ।

କେଦାରନାଥ ଗବେଷଣା ପ୍ରତିଷ୍ଠାନର ସଭାପତି ଶ୍ରୀଯୁକ୍ତ ଗୁଣନିଧି ମହାପାତ୍ର ହେଉଛନ୍ତି କେଦାରବାବୁଙ୍କ ସାନଭାଇ । ପ୍ରତିଷ୍ଠାନର ସର୍ବବିଧ ଉନ୍ନତି ତାଙ୍କରି ପ୍ରତ୍ୟେକ୍ଷ ସାହାଯ୍ୟ ଓ ସହଯୋଗରେ ଅଦ୍ୟାବଧି ସାଧିତ ହେଉଛି । ଭୁବନେଶ୍ୱରର ଜଣେ ବର୍ଷୀୟାନ୍ ନାଗରିକ ଓ ସମାଜସେବୀ ଭାବେ ସେ ସୁବିଖ୍ୟାତ । ସମ୍ମାନନୀୟ ଗୁଣବାବୁଙ୍କ ସ୍ମୃତିଲେଖା ଭୁବନେଶ୍ୱରର ଇତିହାସ ଅନୁଶୀଳନ ଦୃଷ୍ଟିରୁ ଯେପରି ତଥ୍ୟପୂର୍ଣ୍ଣ ସେହିପରି ଗୁରୁତ୍ୱପୂର୍ଣ୍ଣ ମନେହୁଏ । ଗୁଣବାବୁଙ୍କ ଏହି ଲେଖା ଭୁବନେଶ୍ୱରର ଇତିହାସ ଅନୁଶୀଳନ କ୍ଷେତ୍ରରେ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିବ ଏଥିରେ ସନ୍ଦେହ ନାହିଁ । ଜଣେ ସମାଜସେବୀ ଓ ପରୋପକାରୀ ହିତୈଷୀ ବରିଷ୍ଠ ନାଗରିକଭାବେ ଗୁଣନିଧି ବାବୁ ବହୁଧା ଆଦୃତ ଓ ସମ୍ମାନିତ । ମହାପ୍ରଭୁ ଶ୍ରୀ ଲିଙ୍ଗରାଜଙ୍କ କୃପାରୁ ସେ ଅଷ୍ଟୋତ୍ତର ଶତ ବର୍ଷ ପରମାୟୁ ଲାଭ କରନ୍ତୁ, ସୁସ୍ଥ ଓ ନିରାମୟ ଜୀବନଯାପନ କରନ୍ତୁ ବୋଲି ଶ୍ରୀ ଗୌରୀଦେବୀଙ୍କୁ ଓ ଶ୍ରୀ ଜଗନ୍ନାଥଙ୍କୁ ପ୍ରାର୍ଥନା କରୁଛି ।

**ଭଗବାନ ପଣ୍ଡା**
ସମ୍ପାଦକ
କେଦାରନାଥ ଗବେଷଣା ପ୍ରତିଷ୍ଠାନ
ଭୁବନେଶ୍ୱର-୨

# କୃତଜ୍ଞତା

ଜୀବନୀ ଲେଖିବା ପାଇଁ ବନ୍ଧୁମାନେ କହୁଛନ୍ତି । ଡକ୍ଟର ଭଗବାନ ପଣ୍ଡା ବହୁଥର କହିଲେଣି । ମୁଁ ତ ଲେଖକ ନୁହେଁ । ୮୩ ବର୍ଷ ହେଲା, ଜୀବନର ସବୁ କଥା ମନେ ପଡୁନାହିଁ । ଯାହା ମନେ ପଡୁଛି, ଲେଖୁଛି । ଜୀବନୀ ଲେଖିବା ପୂର୍ବରୁ ମୋର ଜନ୍ମ ସମୟ ତା ୧୮.୦୫.୧୯୨୨ଠାରୁ ଭୁବନେଶ୍ୱର ରାଜଧାନୀ ହେବା ପର୍ଯ୍ୟନ୍ତ ଭୁବନେଶ୍ୱରର ଭିନ୍ନ ଭିନ୍ନ ବିଷୟରେ ମୋ ଅନୁଭୂତି ଓ ଅଭିଜ୍ଞତାରୁ ଦୁଇପଦ ଲେଖୁଛି । ଆଶା କରୁଛି ପାଠକମାନଙ୍କୁ ଭଲ ଲାଗିବ ।

'ମୋ' କଥା, ମୋ' ବ୍ୟଥା' ମୋ' ଦୀର୍ଘ ୮୫ ବର୍ଷର ସ୍ମରଣୀୟ ଘଟଣାବଳୀର ସମାହାର । ମୁଁ ସମାଜସେବୀ, ରାଜନୀତିଜ୍ଞ । କିନ୍ତୁ ଲେଖକ ନୁହେଁ । କେଦାରନାଥ ଗବେଷଣା ପ୍ରତିଷ୍ଠାନର ସମ୍ପାଦକ ଶ୍ରୀଯୁକ୍ତ ଭଗବାନ୍ ପଣ୍ଡା, ସହ ସମ୍ପାଦକ ଡକ୍ଟର ହରେକୃଷ୍ଣ ପାତ୍ର ଏବଂ ଅନ୍ୟ ବନ୍ଧୁମାନେ ମତେ ବାରମ୍ବାର କହିବାରୁ ମନେପକାଇଏତକ ଲେଖିଛି । ଅନେକ କଥା ଅବଶ୍ୟ ମନେପଡ଼ିନି, ତେଣୁ ଏ ବହିରେ ସ୍ଥାନ ପାଇପାରିନି । ବହିଟିରେ କିଛି ତ୍ରୁଟି ବି ଥାଇପାରେ । ପାଠକମାନେ ସହୃଦୟବଶତଃ ମତେ ଏଥିପାଇଁ କ୍ଷମା କରିବେ । ଏହି ବହି ଲେଖିବାରେ ମତେ ଡକ୍ଟର ଦେବାଶିଷ ମହାପାତ୍ର, ଗବେଷଣା ପ୍ରତିଷ୍ଠାନର ଗ୍ରନ୍ଥାଗାରିକା ବିନୋଦିନୀ ସାହୁ ସହଯୋଗ କରିଥିବାରୁ ମୁଁ ସେମାନଙ୍କୁ କୃତଜ୍ଞତା ଜଣାଉଛି । ବହିଟିର ଡିଟିପି ଲେଆଉଟ୍ କରିଥିବା କିରଣ କମ୍ପ୍ୟୁଟରସ୍‌ର ଶ୍ରଦ୍ଧେୟ ବାପି ଏବଂ ବହିଟି ଛପାଇବାର ଦାୟିତ୍ୱ ବହନ କରିଥିବା ଶ୍ରୀ ଦୁର୍ଗାଚରଣ ପଣ୍ଡାଙ୍କ ଠାରେ ମୁଁ କୃତଜ୍ଞ ।

ଏହି ବହି ପ୍ରକାଶନ ପାଇଁ ଯେଉଁ ବନ୍ଧୁମାନେ ମତେ ପ୍ରତ୍ୟକ୍ଷ ଓ ପରୋକ୍ଷ ଭାବେ ପ୍ରେରଣା ଓ ପ୍ରୋତ୍ସାହନ ଦେଇଛନ୍ତି ସେହି ସମସ୍ତ ବନ୍ଧୁଙ୍କୁ ମଧ୍ୟ ମୁଁ ମୋର କୃତଜ୍ଞତା ଜଣାଉଛି । ମୋ' ଅଙ୍ଗେନିଭା କଥା ଓ ବ୍ୟଥା ଯଦି ପାଠକମାନଙ୍କ ମନକୁ ଛୁଏଁ, ତା'ହେଲେ ମୋ' ଶ୍ରମ ସାର୍ଥକ ହେବ ।

*-ଗୁଣନିଧି ମହାପାତ୍ର*

# ସୂଚୀପତ୍ର

| ବିଷୟ | ପୃଷ୍ଠା |
|---|---|





# ମୋ' ସମୟର ଭୁବନେଶ୍ୱର

ଯାହା ମନେ ପଡୁଛି ୧୯୨୯ ବେଳକୁ ମନ୍ଦିର ମାଳିନୀ ଭୁବନେଶ୍ୱର ସହର ନୁହେଁ କି ଗାଁ ବି ନୁହେଁ । ଉତ୍ତରରେ ବିବେକାନନ୍ଦ ମାର୍ଗ, ଦକ୍ଷିଣରେ କପିଳେଶ୍ୱର, ପୂର୍ବରେ ଲୁଇସ୍‌ରୋଡ ଓ ସାମନ୍ତରାପୁର, ପଶ୍ଚିମରେ ରେଳଲାଇନ୍ । ଏହି ଭୁବନେଶ୍ୱରେ ଯେଉଁମାନେ ବାସ କରୁଥିଲେ ପ୍ରାୟ ଲିଙ୍ଗରାଜ ମନ୍ଦିରରେ ସେମାନଙ୍କର କିଛି ନା କିଛି ସେବା ଥିଲା । କ୍ଷେତ୍ରବାସୀ ବ୍ରାହ୍ମଣ-ମିଶ୍ର, ଦାଶ, ରଥ, ଶତପଥି, ପ୍ରହରାଜ ଓ ତ୍ରିପାଠୀ ଥିବାବେଳେ ବ୍ରାହ୍ମଣ ସେବକ ଭାବେ ପୂଜାପଣ୍ଡା, ମହାପାତ୍ର, ମହାସୁଆର, ଗରାବଡୁ, ପଣ୍ଡା, ସଙ୍ଗିତ୍ରା, ସାନ୍ତରା, ଖୁଣ୍ଟିଆ, ବୈଦ୍ୟଘର ଓ ମେକାପ ପ୍ରଭୃତି ଦାୟିତ୍ୱ ତୁଲାଉଥିଲେ । ସେହିପରି ବଡୁସେବକ ଭାବେ ବଡୁ, ସାନ୍ତରା, କୋଠ କରଣ, ସମର୍ଥା, ବିଶୋଇ, ବଢ଼େଇ, ଦରଜି, କମାର, ଅବଧାନ, ବାରିକ, ବେହେରା, ସାହୁ ମହାଜନ, ପ୍ରଧାନ, କେଉଟ, ଧୋବା, କୁମ୍ଭାର, ଭୋଇ, ମେହେନ୍ତର ପ୍ରଭୃତି ବିଭିନ୍ନ ଜାତିର ବ୍ୟକ୍ତିମାନେ ସେମାନଙ୍କର ଜୀବିକା ନିର୍ବାହ କରୁଥିଲେ । ଏମାନେ ନିମ୍ନ ଲିଖିତ ସବୁ ସାହି ମାନଙ୍କରେ ମନ୍ଦିର ଚାରିପଟେ ରହୁଥିଲେ । ହାଟସାହି ବା ସମର୍ଥା ସାହି, ପଥୁରିଆ ବଡୁସାହି, ବଡୁସାହି, ଦାଶସାହି, ବଡ଼ଦାଣ୍ଡ ସାହି, ପାଟଣା ସାହି, ପରକରଣ ସାହି, ବଣିଆ ସାହି, ଦରଜି ସାହି, ପୂଜାପଣ୍ଡା ସାହି, ମଙ୍ଗଳା ସାହି, ବାରିକ ସାହି, ହରଚଣ୍ଡୀ ସାହି, ବେହେରା ସାହି, ମିଶ୍ରସାହି, ଗରାବଡୁ ସାହି, ନାରଦ ସାହି, ଗୋଡିପୋଖରୀ ସାହି, କୁଞ୍ଜପାଟଣା ସାହି, ମଠ ଭୋଇସାହି, ଭୋଇ ସାହି, ମାଟିଭୋଇ ସାହି, କଞ୍ଜ ଭୋଇ ସାହି ପ୍ରଭୃତି ।

ସେ ସମୟର ଭୁବନେଶ୍ୱର ଚାରିପଟ କୋଚିଲା, ଧଳାଙ୍କୁ, ଆମ୍ବ ଗଛରେ ପୂର୍ଣ୍ଣଥିଲା । ଲିଙ୍ଗରାଜ ମନ୍ଦିର ଠାରୁ ପୂର୍ବରେ ସାମନ୍ତରାପୁର ଦକ୍ଷିଣରେ କପିଳେଶ୍ୱର ପର୍ଯ୍ୟନ୍ତ ଆମ୍ବଗଛରେ ପୂର୍ଣ୍ଣଥିଲା । ସାନ୍ତରାପୁରଠାରୁ କେନାଲ ପର୍ଯ୍ୟନ୍ତ ବଡ଼ ତୋଟା । ଆମ୍ବଗଛର ତୋଟାରେ ଦିନ ୨ଟାରେ ମଧ ସୂର୍ଯ୍ୟକିରଣ ତଳେ ପଡୁନଥିଲା । ବର୍ତ୍ତମାନ ୫/୬ଟା ପୁରୁଣା ଆମ୍ବଗଛ ଅଛି । ବିନ୍ଦୁସାଗର ଉତ୍ତର ପଟୁ ବଡ଼ଗଡ଼ ପର୍ଯ୍ୟନ୍ତ କୋଚିଲା ଗଛ ଧଳାଙ୍କୁ ଗଛରେ ପୂର୍ଣ୍ଣ ଥିଲା । ବର୍ତ୍ତମାନ ବିନ୍ଦୁସାଗର ପଶ୍ଚିମପଟ ହୁଡାରେ ଦୁଇଟି କୋଚିଲା ଗଛ ଅଛି । କେଉଁଠି କେମିତି ଗୋଟେ ଦୁଇଟା କୋଚିଲା ଗଛ ଥାଇପାରେ । ଧଳାଙ୍କୁ ଗଛ ପ୍ରାୟ ଲୋପ ହୋଇ ଗଲାଣି । କେଉଁଠି କେମିତି ଗୋଟେ ଦିଇଟା ଥାଇପାରେ ।

ଭୁବନେଶ୍ୱର ପଶ୍ଚିମ ପଟେ ପୁରୁଣା ଡାକବଙ୍ଗଳା (ବର୍ତ୍ତମାନର ଭୁବନେଶ୍ୱର ଆର୍.ଆଇ. ଅଫିସ୍) ଠାରୁ ବୁଦୁବୁଦିଆ ଜଙ୍ଗଲ ଆରମ୍ଭ । ଏହା ମଧ୍ୟରେ କେତେଗୋଟି ଆମ୍ବତୋଟା, ପଣସ ତୋଟା ଥିଲା । ମାଟିଭୋଇସାହି ଠାରୁ ପୁନାମା ଗେଟ ରେଲଲାଇନ ମଧ୍ୟରେ ଗୋଟିଏ ଛୋଟ ଜଙ୍ଗଲ ଥିଲା । ଏହି ଜଙ୍ଗଲର ନାମ 'ବଳିଦାସବାଗ' । ମୋ ପିଲାଦିନେ ମୋତେ ପ୍ରାୟ ସାତ/ଆଠ ବର୍ଷ ହୋଇଥିଲା, ଗୋଟେ ବିରାଟ ଅଜଗର ସାପ ପ୍ରାୟ ୨୦ ଫୁଟ୍ ଲମ୍ବ ହେବ ଏହି ବଳିଦାସବାଗରେ (ମାଟି ଭୋଇସାହି ପାଖରେ) ଗୋଟେ ବାଛୁରୀ ଗିଳିଦେଇ ଗଛରେ ଗୁଡାଇ ହୋଇଯାଇଥିଲା । ବାଛୁରୀ ମା ଗାଈଟି ଦୂରରେ ହମାଲୁ ଥାଏ, ଗାଈଟି ଘରକୁ ନଆସିବାରୁ ଗାଈର ମାଲିକ ଖୋଜି ଖୋଜି ପହଞ୍ଚି ସାପଟି ଦେଖି ଡାକ ପକାଇଲା । ସାହିର ଲୋକମାନେ ଯାଇ ସେ ସାପର ମୁଣ୍ଡକୁ ଗୋଟେ ଦେଢ଼ିଆ ପଥରରେ ଛେଚିଦେଲେ । ସାପ ଦରମରା ହୋଇ ପ୍ରାୟ ତିନି/ଚାରି ଦିନ ବଞ୍ଚିଥିଲା । ରାତିରେ ଭାରି ଗର୍ଜନ କରେ । ତାକୁ ବଡ଼ ବଡ଼ ଶଗଡ଼ ଦଉଡି ଓ ଲୁହା ଶିକୁଳିରେ ବାନ୍ଧି ଦେଉଥିଲେ ।

ରେଲ ଲାଇନ୍ ପଶ୍ଚିମ ପଟେ ଛଅ ନମ୍ବର ଇଉନିଟ୍ ଏବଂ ବରମୁଣ୍ଡା ପର୍ଯ୍ୟନ୍ତ ବହୁତ ଆମ୍ବଗଛ ଓ ବୁଦୁବୁଦିଆ ଜଙ୍ଗଲ ଥିଲା । ଏରୋଡ୍ରମ ତିଆରି ହେଲା ପର୍ଯ୍ୟନ୍ତ ଏରୋଡ୍ରମ୍ ଭିତରେ ହରିଣ, ହେଟାବାଘ ରହୁଥିଲେ । ଏରୋଡ୍ରମ୍ ଗେଟ୍ ପାଖ ବହୁତ କଣ୍ଟେଇ କୋଳି ଗଛରେ ପୂର୍ଣ୍ଣ ଥିଲା । ମୁଁ ଓ

ମୋର ସାଙ୍ଗମାନେ ଦିନେ ଦିନ ୩ଟାରେ କଣ୍ଟେଇ କୋଳି ତୋଳିବାକୁ ଯାଇଥିଲୁ । ଶିରିପୁରର ସଉରୁଣୀମାନେ ସେହିବାଟ ଦେଇ ଭୁବନେଶ୍ୱରକୁ କାଠ ବିକିବା ପାଇଁ ଆସୁଥିଲେ । ସେମାନେ ଆମକୁ କହିଲେ ପିଲେ ଏଠାକୁ ବାଘ ପାଣିପିଇବା ପାଇଁ ଆସନ୍ତି । ତୁମେମାନେ ପଳେଇଯାଅ । ଆମେ ତାଙ୍କ କଥା ନମାନିବାରୁ ସେମାନେ ଆସି ମୋ ନନାଙ୍କୁ (ବାପା) କହିଦେଲେ । ନନା ଯାଇ ପୁନାମାଗେଟ ପାଖରେ ଜଗିଥିଲେ । ଆମେ ଆସିବାରୁ ମୋତେ ଏପରି ଭାବରେ ଚାକୁଣ୍ଡା ଛାଟରେ ବାଡ଼େଇଲେ ଯେ, ମୁଁ ନନାଙ୍କ ଠାରୁ ଏପରି ମାଡ଼ କେବେ ଖାଇନାହିଁ । ରେଳଲାଇନ୍ ପଶ୍ଚିମପଟେ ଛଅ ନମ୍ବର ଇଉନିଟ୍ରୁ ଭରତପୁର-ରାମପୁର ଅଟକ ଜଙ୍ଗଲ (Reserved Forest) ଆରମ୍ଭ । ଏହି ଜଙ୍ଗଲରେ ବହୁତ ହରିଡ଼ା, ବାହାଡ଼ା, ଅଁଳା ପ୍ରଭୃତି ଔଷଧୀୟ ଗଛ ଥିଲା । ଗଭର୍ଣ୍ଣର ହାଉସ୍ ପାଖରେ ବହୁତ ବାଉଁଶ ବଣ ଥିଲା । ଏହି ବଣରେ ମହାବଳ ବାଘ ରହୁଥିଲେ । ଆମ ପିଲାଦିନେ ଆମ ସାହିର (ହରଚଣ୍ଡୀ ସାହି) ଦୁଇଜଣ ବେହେରା ଲକ୍ଷ୍ମଣ ବେହେରା ଓ ହାଡୁ ବେହେରାଙ୍କୁ ବାଘ ମାରିଥିଲା । ଲକ୍ଷ୍ମଣ ବେହେରା, ବିଜୁ ପଟ୍ଟନାୟକଙ୍କ ଘର ପାଖରେ ଗାଈ ଚରଉଥିଲା । ସେଠାରୁ ତାକୁ ବାଘ ମାରି ନେଇ ଗଭର୍ଣ୍ଣର ହାଉସ୍ ପାଖରେ ବାଉଁଶ ଜଙ୍ଗଲରେ ପକାଇଥିଲା । ଭୁବନେଶ୍ୱରର ପ୍ରାୟ ପଚାଶ ଜଣ ହେବ ଲୋକ ଠେଙ୍ଗା ବାଡି, ଲାଇଟ୍, ବାଜା ନେଇ ଲକ୍ଷ୍ମଣ ବେହେରାର ଶବ ଆଣିଲେ । ତାର କିଛି ଦିନ ପରେ ହାଡୁ ବେହେରା ସେଇ ଜାଗାରେ ଗାଈ ଚରାଉଥିବା ବେଳେ ବାଘ ଆକ୍ରମଣ କଲା । ବେହେରା ବାଘକୁ କଟୁରୀରେ ହାଣି ପାଞ୍ଚଣରେ ପିଟିଲା । ବାଘ ପଳାଇଲା । ତାପରେ ଦୁଇଦିନ ପରେ ବାଘ ପୁଣି ଆକ୍ରମଣ କଲା । ବେହେରା ସେହିପରି କଟୁରୀରେ ବାଘକୁ ହାଣି ପାଞ୍ଚଣରେ ପିଟିଲା । ମହାବଳ ବାଘ ବେହେରାକୁ ନେଇପାରିଲା ନାହିଁ । କିନ୍ତୁ ଖଣ୍ଡିଆ ଖାବରା କରିଦେଲା । ହାଡୁବେହେରା ଭଲ ହେଲା ନାହିଁ ମରିଗଲା ।

**ପାଠପଢ଼ା :-**

ପଣ୍ଡିତ ରତ୍ନାକର ଗରାବଡୁ, ପଣ୍ଡିତ ଭାସ୍କର ମହାପାତ୍ର, ଦୁଇଜଣ ପଣ୍ଡିତ ଭର୍ଣ୍ଣାକୁଲର ପାସ୍ କରି କଟକରେ ପଣ୍ଡିତ ଥିଲେ । ପରେ ପଣ୍ଡିତ ରତ୍ନାକର ଗରାବଡୁ ଚାକିରି ଛାଡି ରାଧାଚରଣଙ୍କ ପୁସ୍ତକ ଦୋକାନ ବୁଝିଲେ ।

ପଣ୍ଡିତ ସତ୍ୟବାଦୀ ଶତପଥି, ପଣ୍ଡିତ କୁଶମଣି ଦାଶ, ପଣ୍ଡିତ କୃଷ୍ଣଚନ୍ଦ୍ର ମିଶ୍ର, ମାଇନର ପାସ୍ କରି ସିଟି ଟ୍ରେନିଂ ନେଇ ପଣ୍ଡିତ ଥିଲେ । ପଣ୍ଡିତ ମଧୁସୂଦନ ମହାପାତ୍ର କଟକର ଗଙ୍ଗାମନ୍ଦିର ଉ.ପ୍ରା. ସ୍କୁଲରେ ହେଡ୍ ପଣ୍ଡିତ ଥିଲେ । ପଣ୍ଡିତ ରଘୁନାଥ ମହାପାତ୍ର ଏଫ୍.ଏ (ଆଇ.ଏ) ପାସ କରି, ବାଣପୁର ମାଇନର ସ୍କୁଲର ହେଡ୍ ମାଷ୍ଟର ଥିଲେ । ୧୯୩୫ ମସିହା ବେଳକୁ ମୋର ବଡ଼ଭାଇନା କେଦାର ମହାପାତ୍ର ବି.ଏ. ପାସ୍ କରି କଟକ ଟ୍ରେନିଂ କଲେଜରୁ ବି.ଇଡି ପାସ୍ କଲେ । ସେ ଭୁବନେଶ୍ୱରର ପ୍ରଥମ ଗ୍ରାଜୁଏଟ୍ ।

ବର୍ତ୍ତମାନର ବି.ଏମ୍ (ଭକ୍ତକବି ମଧୁସୂଦନ ହାଇସ୍କୁଲ) ସେ ସମୟରେ ମାଇନର ସ୍କୁଲଥିଲା । ଏହା ବହୁ ପୁରାତନ ସ୍କୁଲ । ୧୮୫୫ରେ ଏହା ଭର୍ଣ୍ଣାକୁଲାର ସ୍କୁଲ ଥିଲା । ପରେ ୧୮୭୫ ବେଳକୁ ମାଇନର ସ୍କୁଲ ହେଲା । ଏହି ଭର୍ଣ୍ଣାକୁଲାର ସ୍କୁଲରୁ ଭକ୍ତକବି ମଧୁସୂଦନ ରାଓ ପାସ୍ କରି ପୁରୀ ଜିଲ୍ଲା ସ୍କୁଲରେ ପଢ଼ିଥିଲେ । ୧୮୭୪ ବେଳକୁ ମାଇନର ସ୍କୁଲ ହେଲା । ଏହି ସ୍କୁଲ୍‌ରୁ ଓଡ଼ିଶାର ପୂର୍ବତନ ଶିକ୍ଷାମନ୍ତ୍ରୀ ଏବଂ 'ସମାଜ'ର ପୂର୍ବତନ ସମ୍ପାଦକ ପଣ୍ଡିତ ଲିଙ୍ଗରାଜ ମିଶ୍ର ଏହି ମାଇନର୍ ସ୍କୁଲରୁ ପାସ୍ କରିଥିଲେ । ସେତେବେଳେ ଗୋଟିଏ ସଂସ୍କୃତ ଟୋଲ ଥିଲା । ପଣ୍ଡିତ ବନମାଳୀ ମିଶ୍ର ସେଠାକାର ପଣ୍ଡିତ ଥିଲେ । ଗ୍ରାମର ବହୁତ ବ୍ରାହ୍ମଣ ପିଲା ଏହି ଟୋଲରେ ପଢୁଥିଲେ । ସାହି ମାନଙ୍କରେ ଗୋଟେ ଦୁଇଟି ଚାହାଳି ଥିଲା । ଆମେ ମାଇନର ପଢ଼ିବା ସମୟରେ ସ୍କୁଲ ପାଖରେ ଆଜିକାଲି ପରି ଜଳଖିଆ ବିକ୍ରୟ ହେଉନଥିଲା । କଟକ ଆଡୁ ଜଣେ ବିଧବା ସ୍ତ୍ରୀଲୋକ ଲିଙ୍ଗରାଜ ମନ୍ଦିର ସାମନାରେ ଥିବା ଚାଳଘର ଭଡ଼ାନେଇ ରହୁଥିଲା । ତାକୁ ଆମେ ରଘୁମାଉସୀ ବୋଲି ଡାକୁ । ସେ ଗୋଟେ ବଡ଼ କାଠ ଥାଳିରେ ବରା, ଦହିବରା ପ୍ରଭୃତି ସ୍କୁଲ ପାଖରେ ବିକ୍ରି କରେ । ପୁରୁଣା ଏକ ପଇସା ଦେଲେ ବଡ଼ବଡ଼ ଚାରିଟା ବରା ଦିଏ । ଆମେ ଯେଉଁଦିନ ଦଶଟାବେଳେ ଘରୁ ଖାଇକରି ଯାଇନଥାଉ ପଇସାକର ବରା ଖାଇଦେଲେ ପେଟ ପୁରିଯାଏ । ଭୁବନେଶ୍ୱରର ବହୁତ କମ୍ ପିଲା ମାଇନର ପଢୁଥିଲେ । ତେବେ ଆଖପାଖ ଗ୍ରାମମାନଙ୍କରୁ ବହୁତ ପିଲା ପଢୁଥିଲେ । ମାଇନର ସ୍କୁଲରେ ଗୋଟିଏ ବୋଡିଙ୍ଗ୍ ଥିଲା । ପ୍ରାୟ ୨୦/୨୫ ଜଣ ପିଲା ଏହି ବୋଡିଙ୍ଗ୍‌ରେ ରହି ପଢୁଥିଲେ । କେବଳ ଆମରି ବ୍ୟାଚରେ

ଭୁବନେଶ୍ୱରରୁ ୧୦ ଜଣ ପଢୁଥିଲେ । ସେତେବେଳେ ଏହି ସ୍କୁଲରେ ସୁନ୍ଦରପଦାର ଛାତ୍ରବତ୍ସଳ ଶିକ୍ଷକ ୰ ଉଦୟନାଥ ରାଉତରା ହେଡ୍ ମାଷ୍ଟର ଥିବାବେଳେ ୰ ପାଣ୍ଡବ ଚରଣ ଜେନା ସାହିତ୍ୟ ଏବଂ ଅଗାଧୁ ଦାଶ ଅଙ୍କ ପଢ଼ାଉଥିଲେ । ଥରେ ହେଡମାଷ୍ଟର ୰ ଉଦୟନାଥ ରାଉତରା ଆମକୁ ଖଣ୍ଡଗିରି ଯାତକୁ ନେଇକରି ଯାଇଥିଲେ । ଖଣ୍ଡଗିରିରେ ଭୋଜି ବ୍ୟବସ୍ଥା ହୋଇଥିଲା । ପୁରୁଣା ଚାରି ପଇସା ଚାନ୍ଦା । ମୁଁ ବି ନେଇଥିଲି । ଯାତରେ ଧଣ୍ଡି ଖେଳ ହେଉଥିଲା । ମୁଁ ଧଣ୍ଡି ଖେଳି ସେହି ଚାରି ପଇସା ହାରିଗଲି । ଲୁଚିକରି ଘରକୁ ପଳାଇ ଆସିବାକୁ ବସିଲି । ହେଡମାଷ୍ଟର ଖବର ପାଇ ୪ ଜଣ ପିଲା ପଠାଇ ମୋତେ ବାଟରୁ ଧରି ନେଲେ । ମୋ ଭୋଜି ଚାନ୍ଦା ଦେଲେ ଏବଂ କହିଲେ ତୁ ଆଉ କେବେ ଏ ଜୁଆ ଖେଳ ଖେଳିବୁ ନାହିଁ । ମୁଁ ସେହିଦିନୁ କୌଣସି ଜୁଆଖେଳ ଖେଳିନାହିଁ । ସେତେବେଳେ ଖୋର୍ଦ୍ଧା ହାଇସ୍କୁଲ ମାଇନର ପରୀକ୍ଷା ସେଣ୍ଟର ଥିଲା । ପାଣ୍ଡବ ବାବୁ ଆମକୁ ଖୋର୍ଦ୍ଧା ନେଇ ଯାଇଥିଲେ । ୰ ବାଙ୍କନିଧି ପଟ୍ଟନାୟକ ଖୋର୍ଦ୍ଧା ସ୍କୁଲରେ ହେଡ୍ ମାଷ୍ଟର ଥାନ୍ତି । ମୋ ବଡ଼ଭାଇନା କେଦାରନାଥ ମହାପାତ୍ର ତାଙ୍କର ଛାତ୍ରଥିଲେ । ମୁଁ ପରୀକ୍ଷାଦେବା ପାଇଁ ଯାଉଛି ବୋଲି ଭାଇନା ହେଡ୍‌ମାଷ୍ଟରଙ୍କ ନିକଟକୁ ଚିଠି ଦେଇଥିଲେ । ହେଡମାଷ୍ଟର ମୋତେ ପରୀକ୍ଷା ହଲରେ ଆସି କହିଲେ, ତୁମର ଅସୁବିଧା ହେଲେ ମତେ କହିବ । ପାସ୍ କଲେ ଏହି ସ୍କୁଲରେ ଆସି ପଢ଼ିବ । ୧୯୦୫ ମସିହାରୁ ଭୁବନେଶ୍ୱରରେ ଗୋଟିଏ ବାଳିକା ଏଲ୍.ପି. ସ୍କୁଲ ଥିଲା । ପଣ୍ଡିତ ସତ୍ୟବାଦୀ ଶତପଥି ବହୁଦିନ ଏହି ସ୍କୁଲ୍‌ରେ ହେଡ୍‌ପଣ୍ଡିତ ଥିଲେ । ଦୂତି ବେହେରାଣୀ ପିଅନ ଥାଏ । ସେ ସାହିର ଝିଅ ପିଲାମାନଙ୍କୁ ଘର ଘର ବୁଲି ସାଥିରେ ନେଇକରି ଯାଏ ଏବଂ ସ୍କୁଲ ଛୁଟି ହେଲେ ସାଙ୍ଗରେ ଆଣି ଘରେ ଘରେ ଛାଡ଼େ । ବେଶି ଝିଅ ପିଲା ପଢୁନଥିଲେ । ଏହି ସମୟରେ ଭୁବନେଶ୍ୱରର ସରକାରୀ ଅନୁଷ୍ଠାନ କହିଲେ ଗୋଟେ ପୋଷ୍ଟ ଅଫିସ୍, ଥାନା, ଡ଼ିଷ୍ଟ୍ରିକ୍ଟ ବୋର୍ଡ ଡାକ୍ତରଖାନା ଜଣେ ସରକାରୀ ଡାକ୍ତର, ଜଣେ କମ୍ପାଉଣ୍ଡର, ଜଣେ ବେହେରା, ଜଣେ ମେହେନ୍ତର, ଶବ ବ୍ୟବଚ୍ଛେଦ ପାଇଁ ଗୋଟେ ଶବ ବ୍ୟବଚ୍ଛେଦ ଘର । ଡାକ୍ତରଖାନାରେ ଚାରି ବଖରାଘର । ଗୋଟେ ଘରେ ଡାକ୍ତର ବସନ୍ତି । ଗୋଟେ ଘରେ

କମ୍ପାଉଣ୍ଡର ଔଷଧ ଦିଅନ୍ତି । ଅନ୍ୟ ଦୁଇ ବଖରାରେ ଚାରିଟା ଲେଖାଏଁ ଆଠଟି ବେଡ୍ । ପ୍ରାୟ ରୋଗୀ ଆସନ୍ତି ନାହିଁ । ସେଥିପାଇଁ ଲିଙ୍ଗରାଜ ମନ୍ଦିର ଦକ୍ଷିଣ ପଟେ ଥିବା ହାଟରେ ଗୋଟିଏ ବଖରାରେ ହାଟଦିନ କମ୍ପାଉଣ୍ଡର ରୋଗୀମାନଙ୍କୁ ଔଷଧ ଦିଅନ୍ତି । ପୋଷ୍ଟ ଅଫିସ୍ ପାଖରେ ଚକଲା କାନଗୋଇ ଅଫିସ୍ । କେଉଁଠାରେ କିଏ ସରକାରୀ ଜମି ଦଖଲ କଲା, ରାସ୍ତା ଅବରୋଧ କଲା ବା ମଶାଣି ଗୋଚର ଯାଗା ଦଖଲ କଲା ସରକାରଙ୍କୁ ରିପୋର୍ଟ କରନ୍ତି । ସର୍ବରାକାରମାନେ ଖଜଣା ଆଦାୟ କରନ୍ତି । ଲିଙ୍ଗରାଜଙ୍କର ମନ୍ଦିର ଅଫିସ୍ ବର୍ତ୍ତମାନ ଯେଉଁଠାରେ ଅଛି ସେହିଠାରେ ଥିଲା । ଗୋଟେ ବହୁ ଦିନର ଡାକବଙ୍ଗଳା (ବ୍ରିଟିଶ୍ ଅମଳର) ବର୍ତ୍ତମାନ ଭୁବନେଶ୍ୱର ଆର୍.ଆଇ. ଅଫିସ୍ ହୋଇଛି । ଆଉ ଗୋଟେ ପି.ଡବ୍ଲ୍ୟୁ.ଡି. ରେଷ୍ଟସେଡ୍ କେଦାରଗୌରୀ ମନ୍ଦିର ନିକଟରେ ବର୍ତ୍ତମାନ କେଦାରଗୌରୀ କ୍ଲବ୍ ହୋଇଛି । ବୈକୁଣ୍ଠନାଥ ରାଏ ହେଲ୍‌ଥ ଅଫିସର ଥିଲେ । ଏଠାରେ ଚାରି ପାଞ୍ଚଜଣ ଓଡ଼ିଶାର ବିଶିଷ୍ଟ ଲୋକଙ୍କର ଘରଥିଲା । କପିଳେଶ୍ୱର ରାସ୍ତାରେ ଗୌଡୀୟ ମଠ ସାମ୍ନାରେ ଭୁବନାନନ୍ଦ ଙ୍କ ଘର । ତାର ଟିକିଏ ସାମନାକୁ ମୟୂରଭଞ୍ଜ ପଣ୍ଡାଙ୍କ ଘର, ସଚ୍ଚି ମିଶ୍ରଙ୍କ ଘର । ରବିଟକିଜ୍ ସାମ୍ନାରେ ଓଲସିଙ୍ଗ ଦାଶରଥି ପଟ୍ଟନାୟକଙ୍କ ଦୋତାଲା ଚାଳଘର । ଲୁଇସ୍‌ରୋଡ଼ରେ ନିହାର ରଞ୍ଜନ ପାଣିଗ୍ରାହୀଙ୍କ ଘର, ରାମକୃଷ୍ଣ ମିଶନ ପାଖରେ ଜଷ୍ଟିସ୍ ବୀରକିଶୋର ରାୟଙ୍କ ଘର ।

ସେତେବେଳେ ଭୁବନେଶ୍ୱରରେ ବଙ୍ଗାଳି ମାନଙ୍କର ବହୁତ ଘର ଥିଲା । ବେଶୀ ଘର କେଦାର ଗୌରୀ ପାଖରେ ଥିଲା । ରବିଟକିଜ୍ ରାସ୍ତା, କପିଳେଶ୍ୱର ରାସ୍ତା ଏବଂ ବିବେକାନନ୍ଦ ମାର୍ଗରେ ରାମକୃଷ୍ଣ ମିଶନ ପର୍ଯ୍ୟନ୍ତ ବହୁତ ବଙ୍ଗାଳିଙ୍କ ଘର ଥିଲା । ବହୁ ବଙ୍ଗାଳି ଶୀତଦିନେ ଜଳବାୟୁ ପରିବର୍ତ୍ତନ ପାଇଁ ଏଠାକୁ ଆସନ୍ତି । ସେମାନେ ସେମାନଙ୍କର ପରିବାର ଧରି ସନ୍ଧ୍ୟାବେଳେ ବୁଲନ୍ତି । ଯଦି କେହି ବାହାର ଲୋକ ଆସନ୍ତି ସେ ଦେଖିଲେ ଭାବିବେ ଏଇଟା ଗୋଟେ ବଙ୍ଗଳାର ଗାଁ ।

ଏହି ଅବସରରେ ମନେ ପଡୁଛି, ମୟୂରଭଞ୍ଜରୁ ବାହାରୁ ଥିଲା 'ଭଞ୍ଜ ପ୍ରଦୀପ' । ସେଥିରେ ପଣ୍ଡିତ ଗୋଦାବରୀଶ ମିଶ୍ର ଲେଖିଥିଲେ ଋଷି ପ୍ରବୀଣ 'ବୈରାଗୀ' । ଜଣେ ବଙ୍ଗୀୟ ଭଦ୍ରଲୋକ ତାଙ୍କ ପଣ୍ଡାକୁ ପଚାରିଲେ,

ମନ୍ଦିରମାନଙ୍କରେ ପଥରରେ ଯେଉଁ କାରୁକାର୍ଯ୍ୟ ହୋଇଛି ଆଜି କାଲି କେହି ସେ ପଥର ଖୋଦେଇ କାର୍ଯ୍ୟ କରୁଛନ୍ତି ? ହରଚଣ୍ଡୀ ସାହିର ବୈରାଗୀ ମହାରଣା ଏହିପରି ସୁନ୍ଦର ପଥରେ ଖୋଦେଇ କାମ କରୁଛନ୍ତି ବୋଲି ପଣ୍ଡା କହିଲେ । ସେ ବଙ୍ଗୀୟ ଭଦ୍ରଲୋକ ପଚାରି ପଚାରି ବୈରାଗୀ ମହାରଣାଙ୍କ ଘର ପାଖକୁ ଗଲେ । ତାଙ୍କ ସାଙ୍ଗରେ ତାଙ୍କର ୮/୧୦ ବର୍ଷର ଝିଅଟିଏ ଥାଏ । ମହାରଣେ ଗୋଟିଏ ଛୋଟିଆ ମୁଗୁନି ପଥରରେ ମୂର୍ତ୍ତିଟିଏ ଗଢୁଥାନ୍ତି । ସେ ବଙ୍ଗୀୟ ଭଦ୍ରଲୋକ, ତାଙ୍କ ସ୍ତ୍ରୀ ଏବଂ ଛୋଟ ଝିଅଟି ଯାଇ କିଛି ସମୟ ଠିଆ ହୋଇ ଦେଖିଲେ । କିନ୍ତୁ ମହାରଣେ ତାଙ୍କୁ ଅନାଇଲେ ନାହିଁ । ତାଙ୍କୁ ଭାରି ଖରାପ ଲାଗିଲା । ସେମାନେ ଭାବିଲେ ଓଡ଼ିଆମାନେ ଭଦ୍ରତା ଜାଣନ୍ତି ନାହିଁ । ତାପର ଦିନ ସେହି ବଙ୍ଗୀୟ ଭଦ୍ରଲୋକଙ୍କ ଝିଅ ବାଧ୍ୟକଲା ଚାଲ ଯିବା ସେ ମହାରଣା ଯେଉଁ ମୂର୍ତ୍ତି କରୁଥିଲେ ଦେଖିବା । ଝିଅ ବାଧ କରିବାରୁ ସେମାନେ ବୈରାଗୀ ମହାରଣାଙ୍କ ଘରକୁ ଗଲେ । ସେତେବେଳେ ମହାରଣା ପାନଖଣ୍ଡିଏ ଭାଙ୍ଗୁଥିଲେ ଖାଇବାପାଇଁ । ଏମାନଙ୍କୁ ଦେଖି ମସିଣା ପକାଇ ବସିବାକୁ କହିଲେ ଏବଂ ନିଜେ ତିଆରି କରିଥିବା ବିଭିନ୍ନ ସୁନ୍ଦର ସୁନ୍ଦର ମୂର୍ତ୍ତିମାନ ଆଣି ଦେଖାଇ କେଉଁ ମୂର୍ତ୍ତିଙ୍କର କେଉଁ ଆୟୁଧ ସେ ବିଷୟରେ ବୁଝାଇଲେ । ପାନ ଖାଇବାକୁ ଦେଲେ । ସେ ବଙ୍ଗୀୟ ଦମ୍ପତି କହିଲେ କାଲି ଏତିକିବେଳେ ଆମେ ଆସିଥିଲୁ । ବହୁତ ସମୟ ଠିଆ ହୋଇ ତମ କାମ ଦେଖିଲୁ ଅଥଚ ତୁମେ ଆମ ଆଡେ ଚାହିଁଲ ନାହିଁ । ମହାରଣେ କହିଲେ ଯେଉଁ ବିଶୁ ମହାରଣା କୋଣାର୍କ ମନ୍ଦିର କରିଥିଲେ, ଆମେ ତାଙ୍କରି ବଂଶଧର । ବିଶୁ ମହାରଣା କାମ କଲାବେଳେ ଦୁନିଆକୁ ଭୁଲିଯାନ୍ତି । ସେ ତାଙ୍କ ସାଥୀ ମହାରଣାମାନଙ୍କୁ କହିଥାନ୍ତି ମୋତେ ମଝିରେ ମଝିରେ ଖଣ୍ଡେ ଖଣ୍ଡେ ପାନ ଦେବ । ଏହିକଥା ସିବେଇ ସାନ୍ତ ଶୁଣିଥିଲେ । ସିବେଇ ସାନ୍ତ ମନ୍ଦିର କାମ ଦାୟିତ୍ୱରେ ଥିଲେ । ସେ ବୁଲି ବୁଲି କାମ ଦେଖିଲା ବେଳେ ବିଶୁ ମହାରଣାକୁ ପାନ ଖଣ୍ଡେ ଦିଅନ୍ତି । ଦିନେ ପାନ ଦେଲାବେଳେ ଅନ୍ୟମନସ୍କ ହୋଇଗଲେ । ପାନ ଖଣ୍ଡ ହାତରୁ ଖସିଗଲା । ମହାରଣା ରାଗିଯାଇ ହାତୁଡ଼ା ଉଠାଇ ମାରିବାକୁ ବସିଲେ । କହିଲେ ମୋ ଧ୍ୟାନ ଭାଙ୍ଗିଦେଲୁ ! ବୁଲି ଦେଖନ୍ତି ତ ସିବେଇ ସାଆନ୍ତ । ବୈରାଗୀ କହିଲେ ଆମେ ଏହି ପଥରରେ ଖୋଦାଇ କଲାବେଳେ ସେହିପରି ଦୁନିଆକୁ

ଭୁଲିଯାଉ । ସେ ବଙ୍ଗୀୟ ଦମ୍ପତି ଭାରି ଖୁସି ହୋଇ ପଣ୍ଡିତ ଗୋଦାବରୀଶ ମିଶ୍ରଙ୍କୁ ତାହା କହିଥିଲେ, ଯାହାକୁ ନେଇ ପଣ୍ଡିତ ମିଶ୍ର ଋଷି ପ୍ରତିମ ବୈରାଗୀ ଲେଖାଟି ଲେଖିଥିଲେ ।

**ଦୋକାନ ବଜାର :-**

ଭୁବନେଶ୍ୱରରେ ଲିଙ୍ଗରାଜ ମନ୍ଦିର ପାଖରେ ଛୋଟ ଛୋଟ ଦୋକାନ ଅଳ୍ପ ଥିଲା । ଧର୍ମଶାଳା ସାମନାରେ ଦୁଇଟି ଭଲ ମିଠା ଦୋକାନ ଥିଲା । ଗୋଟେ ହାଡୁସାହୁ ଦୋକାନ, ଆଉ ଗୋଟେ ବିଶୋଇ ଘର ଦୋକାନ । ହାଡୁ ସାହୁ ଦୋକାନରେ ସବୁଠାରୁ ଅଧିକ ବିକ୍ରି ହୁଏ । ରସଗୋଲା, ମଗଜଲଡୁ, ଫେଣି ଗଜା, ଲବଙ୍ଗଲତା, ଖଜା, ଗଜା, ନିମିକି ପ୍ରଭୃତି ପୁରୁଣାକାଳିଆ ମିଠା ବିକ୍ରି ହୁଏ । ମନେ ପଡୁଛି ବଡ଼ ବଡ଼ ରସଗୋଲା ଗୋଟାକୁ ଏକ ଅଣା (ଛଅପଇସା) ଦରରେ ବିକ୍ରି ହୁଏ । ବଡ଼ଦାଣ୍ଡରେ ଆନା ସାହୁ ମହାଜନଙ୍କର ଗୋଟେ ବଡ଼ ତେଜରାତି ଦୋକାନ ଥିଲା । ସାହି ମାନଙ୍କରେ ଛୋଟ ଛୋଟ ତେଜରାତି ଦୋକାନ ଥିଲା । ବଡ଼ଦାଣ୍ଡରେ ୪।୫ ଘର ଗୁଡ଼ିଆ ବିଶୋଇଙ୍କ କୋରାଖଇ ଦୋକାନ ଥିଲା । ସେତେବେଳେ ଗଣେଶ ବିଶୋଇଙ୍କ କୋରା ଖଇ, ମୁଢ଼ି ବହୁତ ବିକ୍ରୟ ହୁଏ । ଆମେ ପିଲାଦିନେ ପଇସାକର (ପୁରୁଣା ପଇସା) ଖଇ, ମୁଢ଼ି ନେଇ ସ୍କୁଲକୁ ବାଟଯାକ ଖାଇଖାଇଯାଉ । ଆମେତ ଲୁଗା ପିନ୍ଧୁଥିଲୁ । ଅଣ୍ଟିଏ ଖଇ ମୁଢ଼ି ଖାଇ ପାରୁନାହିଁ । କାପିଟେଲ ହେଲାବେଳକୁ ବଇରାଗି ସାହୁ, କୁଞ୍ଜ ସାହୁ ନାଁ ଡାକହେଲା ଏବେ ମଧ ତାଙ୍କ କୋରା, ଧନୁମାସରେ ଧନୁମୁଆଁ ଭଲ ହେଉଛି ଏବଂ ଘରପାଖ ଦୋକାନରେ ବିକ୍ରି ହେଉଛି । କିନ୍ତୁ ଲିଙ୍ଗ ବିଶୋଇ, କେଦାର, ହୃଷି, ରବି ଏବଂ ଗଣେଶ ବିଶୋଇଙ୍କ ପିଲାମାନେ ଲିଙ୍ଗରାଜଙ୍କ ବିଶୋଇ, ସେବକ ହୋଇଥିବାରୁ ମନ୍ଦିରରେ ଦୋକାନ କରି କୋରାଖଇ ବିକ୍ରୟ କରୁଛନ୍ତି ଏବଂ ପାଳି ଅନୁସାରେ ପ୍ରତିଦିନ ମନ୍ଦିରକୁ ବାଳଭୋଗ ମଧ ଦିଅନ୍ତି । କପିଳେଶ୍ୱରର ବୃନ୍ଦାବନ ସାହୁ (କ୍ୟାପିଟାଲ ହାଟର ଝିଲିମିଲି ଲୁଗା ଦୋକାନର ମାଲିକ ଡାକନାମ ବୁଦ୍ଧିଆ ମହାଜନ) ବାପାଙ୍କର ଲୁଗା ଦୋକାନ ଥିଲା । ବର୍ତ୍ତମାନ ଲିଙ୍ଗରାଜ ମନ୍ଦିର ଦକ୍ଷିଣ ପଟେ ଥିବା ହାଟ ଅଛି । ଏହି ହାଟଟି ଭୁବନେଶ୍ୱର ଏବଂ ଆଖ ପାଖ ଗାଁ ମାନଙ୍କର

ମୁଖ୍ୟ କାରବାର ସ୍ଥଳୀ ଥିଲା । ବର୍ତ୍ତମାନ ପରି ସୋମବାର, ଗୁରୁବାରରେ ହାଟ ବସେ । ହାଟରେ କୁଲା, ବାଉଁସିଆ ଠାରୁ ଶୁଖୁଆ, ମାଛ, ଲୁଗାପଟା, ତେଜରାତି ଜିନିଷ, ଷ୍ଟେସ୍‌ନାରି ଜିନିଷ ସବୁ ମିଳେ । ଆଖପାଖ ଗ୍ରାମମାନଙ୍କରୁ ପନିପରିବା ଏବଂ ଆଳୁ ସେସମୟରେ କଟକ ଆଡୁ ଆସେ । ବର୍ଷାଦିନେ ନୂଆପଲ୍ଲୀ, ବରମୁଣ୍ଡା, ଘାଟିକିଆ ଆଡୁ ଶଗଡ଼ ଶଗଡ଼ ବାଇଗଣ, ବର୍ଷାଦିନିଆ ପରିବା ଆସେ । ବିସେ ବାଇଗଣ (୨ କିଲୋ ହେବ) ର ଦାମ ପୂରୁଣା ଏକ ପଇସାରେ ବିକ୍ରୟ ହେବାର ମୁଁ ଦେଖିଛି । ଭୁବନେଶ୍ୱରରୁ ରେଳ ଯୋଗେ କଲିକତା ବାଇଗଣ ଚାଲାଣ ହୁଏ । କପିଳେଶ୍ୱର, ସରକନ୍ତରା ଏବଂ କପାଳୀ ମନ୍ଦିର ପଛପଟ ବିଲମାନଙ୍କରେ ପ୍ରଚୁର ସାରୁ ହେଉଥିଲା ଏବଂ ଭାରି ସୁଆଦିଆ । ଲକ୍ଷ୍ମୀସାଗର ପାନ, ଜଇପୁର ଗୁଡ (ଦୟାନଦୀ ପଶ୍ଚିମପଟେ ଥିବା ଗ୍ରାମ) ପ୍ରସିଦ୍ଧ ଥିଲା । ପ୍ରତିଦିନ ଉପର ବେଳା ବଡ଼ଦାଣ୍ଡର ଆମ ଘର ବାରଣ୍ଡାରେ ଲକ୍ଷ୍ମୀସାଗର ପାନ, ସୁନ୍ଦରପଦା ଆଡୁ ଟୋକେଇରେ ଚାଉଳ ଆଣି ଲୋକେ ବିକ୍ରି କରୁଥିଲେ । ଉସୁନା ଚାଉଳ କଟିକି ସେର (ପ୍ରାୟ ୨ କିଲୋ ହେବ) ତିନି/ଚାରି ପଇସାରେ ବିକ୍ରୟ ହେଉଥିଲା (ନୂଆ ପଇସା ପାଞ୍ଚ/ଛଅ ପଇସା) । ଭୁବନେଶ୍ୱରରେ ବଜାର ନବଢ଼ିବାର କାରଣ ସେତେବେଳେ ଜଟଣିରେ ବହୁତ ବଡ଼ ବଡ଼ ଗୋଦାମ ଥିଲା । ଜଟଣି ଭୁବନେଶ୍ୱରରୁ ୧୦/୧୫ କିଲୋମିଟର ରାସ୍ତା । ଏପଟେ କଟକ ବଜାର । ଭୁବନେଶ୍ୱରରେ ରାଜଧାନୀ ହେବା ପୂର୍ବରୁ ସ୍କୁଲ ପିଲାମାନେ ସାଇକେଲରେ ଯାଇ କଟକରୁ ବହିଖାତା କିଣି ଆଣୁଥିଲେ । କଟକ ଭୁବନେଶ୍ୱରରୁ ପ୍ରାୟ ୨୦ କିଲୋମିଟର ରାସ୍ତା ।

## ଲିଙ୍ଗରାଜ ମନ୍ଦିର ରୀତିନୀତି :-

ଭୁବନେଶ୍ୱର ଲିଙ୍ଗରାଜଙ୍କର ଜମିଦାରି ଥିଲା । ଉତ୍ତରରେ ରାମେଶ୍ୱର ମନ୍ଦିର (ମାଉସୀମା ମନ୍ଦିର) ଦକ୍ଷିଣରେ କପିଳେଶ୍ୱର, ପୂର୍ବରେ ନୂଆଗାଁ, ପଶ୍ଚିମରେ ପୋଖରୀପୁଟ, ଜାଗମରା, ସିରିପୁର ମଉଜା ପର୍ଯ୍ୟନ୍ତ ଥିଲା । ଏଣ୍ଡାମେଣ୍ଟ ଅଧିନକୁ ଯିବା ପୂର୍ବରୁ ଗୋଟେ ସ୍ଥାୟୀ କମିଟି ପୁରୀ ଜିଲ୍ଲା ଜଜଙ୍କ ଅଧିନରେ ଥିଲା । ଗୋପାଳ ପ୍ରହରାଜ, ପୁରୀ ଏମାର ମଠ ମହନ୍ତ, ଭିଙ୍ଗାରପୁରର ଗଙ୍ଗାଧର ଚୌଧୁରୀ କମିଟିର ଆଜୀବନ ସଭ୍ୟ ଥିଲେ । ମନ୍ଦିର

ଜମିଦାରି ବୁଝିବାକୁ ଜଣେ ମେନେଜର, ଜଣେ ସୁପରଭାଇଜର, ଜଣେ ଅମିନ ସେବାପୂଜା ପରିଚାଳନା ପାଇଁ ମେନେଜରଙ୍କ ଅଧିନରେ ସେବକଙ୍କ ମଧ୍ୟରୁ ଦୁଇଜଣ 'ଚରଚେଇତ' ଥିଲେ । କିନ୍ତୁ ଅଧିକାଂଶ ସମୟରେ, ପୂଜାପଣ୍ଡା ବଡୁ ଏବଂ ବ୍ରାହ୍ମଣ ସେବକଙ୍କ ମଧ୍ୟରେ ମାଲିମକଦ୍ଦମା ଲାଗି ରହୁଥିବାରୁ ଲିଙ୍ଗରାଜଙ୍କର ସେବା ପୂଜାରେ ବିଭ୍ରାଟ ହେଉଥିଲା । ତେଣୁ ଆଖପାଖ ଗ୍ରାମମାନଙ୍କୁ ଯେଉଁ ଅନ୍ନ ବରାଦ ଆସୁଥିଲା ବେଶି ପରିମାଣରେ କପିଳେଶ୍ୱର କପିଳନାଥଙ୍କ ପାଖରେ ହେଉଥିଲା । ବିଶେଷତଃ କାର୍ତ୍ତିକ ମାସରେ ଶନିବାରେ, ସୋମବାରେ କପିଳନାଥଙ୍କ ପାଖରେ ଆଖପାଖ ଗ୍ରାମମାନଙ୍କରୁ ବହୁତ ଭକ୍ତଙ୍କର ସମାଗମ ହେଉଥିଲା ଏବଂ ବହୁତ ଅନ୍ନ ବିକ୍ରୟ ହେଉଥିଲା । କିନ୍ତୁ ମଲିଆ ସେବକ ଏବଂ ଖୁଣ୍ଟିଆ ସେବକ (ବ୍ରାହ୍ମଣ ସେବକ)ଙ୍କ ମଧ୍ୟରେ କପିଳନାଥଙ୍କ ସେବାପୂଜାରେ ବିଭ୍ରାଟ ହେବାରୁ ଭକ୍ତସଂଖ୍ୟା କମିଯିବା ସହିତ ଠାକୁରଙ୍କ ବାହାର ଅନ୍ନ ବରାଦ ଏବଂ କାର୍ତ୍ତିକ ମାସରେ ଅନ୍ନ ବିକ୍ରୟ ବନ୍ଦ ହୋଇଗଲା ।

ଏହି ଅବସରରେ ପୂର୍ବରୁ ବାସୁଦେବ ମନ୍ଦିରରେ, ଠାକୁରଙ୍କ କୋଠ ଭୋଗ ଛାଡ଼ିଦେଲେ ବହୁତ କମ ଅନ୍ନ ଭୋଗ ହେଉଥିଲା । ଏକାଦଶୀରେ କେବଳ ସେବକ ମାନେ ଅନ୍ନ ରାନ୍ଧି ଘରକୁ ନିଜେ ନିଜେ ରାନ୍ଧି କିମ୍ବା ସେବାକାରୀଙ୍କ ହାତରେ ରାନ୍ଧି ନିଜେ ଘରକୁ ନେଉଥିଲେ । ଅନ୍ୟ ଲୋକ ଛୁଇଁଲେ ମାରା ହୋଇଯିବ । ଭୁବନେଶ୍ୱର ରାଜଧାନୀ ହେବା ବେଳକୁ ଏଠାରେ ବିକ୍ରି ଅନ୍ନ ଏବଂ ବରାଦି ଅନ୍ନ ବହୁତ ବଢ଼ିଗଲା । ଏହି ମନ୍ଦିରର ସେବା ପୂଜା ଲିଙ୍ଗରାଜଙ୍କର ବ୍ରାହ୍ମଣ ସେବକ ନିଯୋଗ ବୁଝୁଛନ୍ତି ।

## ଯାତ୍ରା-ପର୍ବପର୍ବାଣୀ :-

ଲିଙ୍ଗରାଜଙ୍କର ୧୪ ଯାତ୍ରା ମଧ୍ୟରେ ଅଶୋକାଷ୍ଟମୀ, ଶିବରାତ୍ରି ପ୍ରଧାନ । ଏହି ଯାତ୍ରାକୁ ଆଖପାଖ ଗାଁ ମାନଙ୍କରୁ ଏପରିକି ପୁରୀ ଜିଲ୍ଲାର କାକଟପୁର, ଅସ୍ତରଙ୍ଗ, ଗୋପ ଏବଂ କଟକ ଜିଲ୍ଲାର ଗ୍ରାମମାନଙ୍କରୁ ଶଗଡ଼ ଗାଡିରେ ବହୁତ ଲୋକ ଆସନ୍ତି । ବହୁତ ବଡ଼ ବଡ଼ ଦୋକାନ ମାନ ବସେ । ଅଶୋକାଷ୍ଟମୀରୁ, ଅକ୍ଷୟତୃତୀୟା ପର୍ଯ୍ୟନ୍ତ ବଢ଼େଇବାଙ୍କ ବଡୁ ନିଯୋଗ ତଳେ ମସିଣା ଦୋକାନ ହୁଏ । ଏବେ ଦଶହରା ସମୟରେ ସାହି ସାହିରେ ମାଟିର

ଦୁର୍ଗାମୂର୍ତ୍ତି ହୋଇ ପୂଜା ହେଉଛନ୍ତି । କିନ୍ତୁ ସେତେବେଳେ ଭୁବନେଶ୍ୱରରେ ଥିବା ଅଷ୍ଟଚଣ୍ଡୀ କପାଳି, ରାମାୟଣୀ ମୋହିନୀ, ବିନ୍ଧ୍ୟବାସିନୀ, ଦ୍ୱାରବାସିନୀ, ଅମ୍ବିକା, ଉତ୍ତରାଣୀ ଏବଂ ଗୌରୀ-ଏହି ଚଣ୍ଡୀ ମାନଙ୍କ ପାଖରେ ଷୋଳଦିନ (ଦ୍ୱିତୀୟା ଓଷା ଠାରୁ ଦୁର୍ଗା ଅଷ୍ଟମୀ ପର୍ଯ୍ୟନ୍ତ) ଚଣ୍ଡୀ ହେଉଥିଲା ଏବଂ ଭୋଗରାଗ ହେଉଥିଲା । ଏବେ କେତେ ଚଣ୍ଡୀ ମନ୍ଦିରରେ ଷୋଳ ପୂଜା ବନ୍ଦ ହୋଇଗଲାଣି । ମିଶ୍ରସାହି ଦାଶସାହିରେ କେତେ ଜଣଙ୍କ ଘରେ ଏବଂ ଆମ ଘରେ ଦୁର୍ଗାଦେବୀ ପୂଜା ପାଉଥିଲେ । ଏବେ ଜଣେ ଦୁଇଜଣଙ୍କ ଘରେ ଏବଂ ଆମ ଘରେ ଦୁର୍ଗାଦେବୀ ଅଛନ୍ତି । ସପ୍ତମୀଠାରୁ ନବମୀ ପର୍ଯ୍ୟନ୍ତ ଚଣ୍ଡୀ ପୂଜା ଏବଂ ଭୋଗରାଗ ହେଉଛି । ପ୍ରଥମେ ବଙ୍ଗାଳିମାନେ କେଦାରଗୌରୀ ରାସ୍ତାରେ କାଂଚକାମେନୀ ମଠ ସାମନାରେ ମୃଣ୍ମୟୀ ଦୁର୍ଗା ମୂର୍ତ୍ତି ଆରମ୍ଭ ହେଲା । ପରେ ପରେ ଏହା ସବୁ ସାହିରେ ହେଲା । ଖୁଦୁରୁକୁଣୀ ପୂଜା ସାହିମାନଙ୍କରେ ଝିଅ ପିଲାମାନେ କରୁଥିଲେ ଏବେ ବହୁ ଆଡ଼ମ୍ବରରେ କରୁଛନ୍ତି ।

ଲିଙ୍ଗରାଜଙ୍କର ଚଉଦ ଯାତ୍ରା-ଶିବରାତ୍ରି ଅଶୋକାଷ୍ଟମୀ ସବୁଠାରୁ ବଡ ଯାତ୍ରା । ଶିବରାତ୍ରିରେ ଗାଁ ମାନଙ୍କରୁ ଶଗଡ଼ ଗାଡିରେ ଚାଲିକରି ବହୁତ ଲୋକ ଆସୁଥିଲେ । କଟକ, ପୁରୀ, ବାଲେଶ୍ୱର ଆଡୁ ମଧ ବହୁତ ଲୋକ ଆସୁଥିଲେ । ଲିଙ୍ଗରାଜ ମନ୍ଦିରରେ ଶିବରାତ୍ରି ଦିନ ଦୀପ ଜାଳିବାପାଇଁ । ଲିଙ୍ଗରାଜ ମନ୍ଦିର ଠାରୁ ବଡ଼ୋଇବାଙ୍କ ପର୍ଯ୍ୟନ୍ତ ବହୁତ ବଡ଼ ବଡ଼ ଦୋକାନ ବସୁଥିଲା । ଭୁବନେଶ୍ୱର ରାଜଧାନୀ ହେବାପରେ ଏଠାରେ ଓଡ଼ିଶାର ସବୁ ଆଡର ଲୋକ ରହିଗଲେଣି । ତେଣୁ ଆଗ ଅପେକ୍ଷା ବେଶି ଲୋକ ଶିବରାତ୍ରିରେ ଲିଙ୍ଗରାଜ ମନ୍ଦିରରେ ଦୀପ ଜାଳିବାକୁ ଆସୁଛନ୍ତି । ଅବଶ୍ୟ ଆଗପରି ଆଉ ବଡ ବଡ ଜଳଖିଆ ଦୋକାନ, ଷ୍ଟେସନାରି ଦୋକାନ ଆସୁନାହିଁ ।

**ଭାଗବତ ଘର :-**

ଭୁବନେଶ୍ୱରର ପାଟଣା ସାହି, ହରଚଣ୍ଡୀସାହି ଓ ଗୋଡିପୋଖରୀ ସାହିରେ ଭାଗବତ ଘର ଅଛି । ମୋ ପିଲାଦିନେ ଏହି ସବୁ ଭାଗବତ ଘରେ ଭାଗବତ, ରାମାୟଣ, ମହାଭାରତ, ହରିବଂଶ ପଢ଼ା ହେଉଥିଲା । ସାହିର

ବୁଢ଼ା, ବୁଢ଼ୀମାନେ ବସି ଶୁଣୁଥିଲେ । ଏବେ ମଧ୍ୟ ପଢ଼ା ହେଉଛି । କେତେ ଲୋକ ନିଜ ଦାଣ୍ଡପିଣ୍ଡାରେ ପୁରାଣ ପଢ଼ନ୍ତି । ସାହିଲୋକ ଆସି ଶୁଣନ୍ତି । ଅବଶ୍ୟ ଆଗଭଳି ଆଜିକାଲି ଆଉ ପୁରାଣ ପଢ଼ା ହେଉନାହିଁ ।

**କ୍ଲବ୍ :-**

ଭୁବନେଶ୍ୱରେ ଏବେ ବହୁତ କ୍ଲବ୍ ହେଲାଣି । ପ୍ରଥମେ ସେତେ ବେଳେ ବହୁତ କମ୍ କ୍ଲବ୍ ଥିଲା ୧୯୨୫ ମସିହାରେ ବଡ଼େଇବାଙ୍କରେ ଥିବା ଟାଉନ୍ କ୍ଲବ୍ ଆରମ୍ଭ । ଦିଗମ୍ବର ଶ୍ରୀଚନ୍ଦନ ଖୋର୍ଦ୍ଧାରେ ଏସ୍.ଡି.ଓ ଅଫିସରେ ପେସ୍‌କାର ଥିଲେ । ଚାକିରିରୁ ଅବସର ନେବାପରେ ଭୁବନେଶ୍ୱରର ହରଚଣ୍ଡୀ ସାହିରେ ବୈକୁଣ୍ଠନାଥ ରାଏଙ୍କ ଘରେ ରହୁଥିଲେ । ଭୁବନେଶ୍ୱର ଯୁବକମାନଙ୍କୁ ଏକତ୍ର କରି ଗୋଟେ କ୍ଲବ୍ ଆରମ୍ଭ କଲେ । ବିଶ୍ୱନାଥ ମହାପାତ୍ର, କେଦାରନାଥ ମହାପାତ୍ର, ଉଦୟନାଥ ପୂଜାପଣ୍ଡା, ମଧୁସୂଦନ ବଡୁ ଅମ୍ବିକା ଶଙ୍କର ରାଏ ପ୍ରଭୃତି ମେମ୍ବର ଥିଲେ । ବର୍ତ୍ତମାନ ଯେଉଁଠାରେ ଟାଉନ୍ କ୍ଲବ୍ ତିନିତାଲା କୋଠା ରହିଛି ସେଠାରେ ଗୋଟେ ବଡ଼ ଚାଳଘର ଥିଲା । ସେହି ଘରେ କ୍ଲବ୍ ଆରମ୍ଭ କଲେ । ସେମାନେ ଭୁବନେଶ୍ୱରର ବହୁତ ଉନ୍ନତିମୂଳକ କାର୍ଯ୍ୟ କରିଥିଲେ । ପାପନାଶିନୀ ପୋଖରୀର ପଶ୍ଚିମପଟ ବାଡ଼ ପୁରା ଭାଙ୍ଗି ଯାଇଥିଲା । ଏମାନେ ସେ ପାଚେରି ନୂଆକରି ତିଆରି କରିଥିଲେ । ମୁଁ, ୰ ଘନଶ୍ୟାମ ପଣ୍ଡା, ହରିପୂଜାପଣ୍ଡା, ଗନ୍ଧର୍ବ ଶତପଥି, ବାସୁଦେବ ତ୍ରିପାଠୀ, ବୃନ୍ଦାବନ ମହାପାତ୍ର, ନରହରି ଦାଶ ପ୍ରଭୃତି ସାଙ୍ଗମାନେ ମୁଁ ଯେଉଁ ଘରେ ରହୁଛି ସେହି ଘରର ଦାଣ୍ଡ ଘରେ ଗୋଟିଏ ଆଲମିରା ରଖି ଗୋଟିଏ ଲାଇବ୍ରେରି ଆରମ୍ଭ କଲୁ । ପରେ ୧୯୩୬ ବେଳକୁ ଏହି ଲାଇବ୍ରେରିକୁ ଟାଉନ୍ କ୍ଲବ୍ ଘରକୁ ନିଆଗଲା । ଏହି ଲାଇବ୍ରେରୀର ନାଁ ବୀଣାପାଣି ପାଠାଗାର ଦିଆଗଲା । ଏହି ପାଠାଗାରରେ ବର୍ତ୍ତମାନ ବହୁତ ଦୁଷ୍ପ୍ରାପ୍ୟ ବହି ଓ ପତ୍ରପତ୍ରିକା ଗଚ୍ଛିତ ଅଛି । ବର୍ତ୍ତମାନ ମଧ୍ୟ କିଛି ପତ୍ରିକା ଏବଂ ସମ୍ବାଦପତ୍ର ଆସୁଛି । ଏହି ସମୟରେ ପଣ୍ଡିତ ରଘୁନାଥ ମହାପାତ୍ର ଚାକିରି ଛାଡ଼ି ଭୁବନେଶ୍ୱରରେ କଂଗ୍ରେସ କାର୍ଯ୍ୟକ୍ରମ ଏହି କ୍ଲବ୍ ଘରେ ଆରମ୍ଭ କଲେ । ୧୯୪୨ ଭାରତ ଛାଡ଼ ଆନ୍ଦୋଳନରେ ରଘୁବାବୁ ଜେଲ ଗଲେ । ସରକାର ଏହି ଟାଉନ୍ କ୍ଲବ୍‌ଟି ସିଲ୍

କରିଦେଲେ । ବହୁତ ଅସୁବିଧା ହେଲା । କ୍ଲବ୍ ଘର ଛପର ହୋଇ ପାରିଲା ନାହିଁ । ଘର ପ୍ରାୟ ଭାଙ୍ଗିଗଲା । ଭୁବନେଶ୍ୱରରେ ହାଇସ୍କୁଲ ନଥିବାରୁ ମୁଁ, ମୋର ସାଥୀମାନେ ବାହାର ସ୍କୁଲ ମାନଙ୍କରେ ପଢ଼ିବାକୁ ଗଲୁ । ଆମ ପରେ ପରେ ଜୟଦେବ ମହାପାତ୍ର, ନାରାୟଣ ପଣ୍ଡା, ଲକ୍ଷ୍ମୀଧର ମହାରଣା, କୁମର ବେହେରା, ପ୍ରଭୃତି ଯୁବକମାନେ ଏହି ଟାଉନ୍ କ୍ଲବ୍ ଏବଂ ବୀଣାପାଣି ପାଠାଗାରରେ ବହୁତ ଉନ୍ନତି କଲେ । ଚାଳ ଘର ଭାଙ୍ଗି ତିନିତାଲା କୋଠା ଘର କଲେ । ଏ ପର୍ଯ୍ୟନ୍ତ ମଧ୍ୟ ଶିଶୁଦିବସ, ସ୍ୱାଧୀନତା ଦିବସ, ସରସ୍ୱତୀ ପୂଜା, ଗଣେଶ ପୂଜା ପ୍ରଭୃତି ଭିନ୍ନ ଭିନ୍ନ କାର୍ଯ୍ୟକ୍ରମ କରୁଛନ୍ତି । ତଳ ମହଲା ହଲ୍‌ରେ ସଭାସମିତି ପ୍ରଭୃତି ହେଉଛି । ବୟସ୍କ ଲୋକମାନେ ପ୍ରାୟ ସବୁ ଦିନ ବହୁ ସଂଖ୍ୟାରେ ଆସି ତାସ, ପ୍ରଭୃତି ଖେଳନ୍ତି । ପ୍ରଥମ ମହଲାରେ ଲାଇବ୍ରେରି, ଦ୍ୱିତୀୟ ମହଲାରେ ଝିଅ ପିଲାମାନେ ସିଲେଇ ଶିଖୁଛନ୍ତି । ଭୁବନେଶ୍ୱରର ମ୍ୟୁନିସ୍‌ପାଲଟି ଟାଉନ୍ କ୍ଲବ୍ ତତ୍ତ୍ୱାବଧାନରେ ଗୋଟେ ଖେଳପଡ଼ିଆ ପାଟଣା ସାହିର ହାତିଗାଡିଆ ନିକଟରେ ଦେଇଛି । ସାହିର ପିଲାମାନେ ଫୁଟ୍‌ବଲ୍, ହକି, ବ୍ୟାଡମିଣ୍ଟନ୍ ପ୍ରଭୃତି ଖେଳୁଛନ୍ତି ।

**ନଈବଢ଼ି :-**

ଆମ ପିଲାଦିନେ ଦୟାନଦୀ, ଗଙ୍ଗୁଆ ନଦୀରେ ପୋଲ ହୋଇନଥିଲା । ନଈ ବଢ଼ି ସମୟରେ ଭୁବନେଶ୍ୱରରୁ ପୁରୀ, ସାକ୍ଷୀଗୋପାଳ ଜଗନ୍ନାଥ ସଡ଼କରେ ଗଲେ ପୁରା ଗୋଟେ ଦିନ ଲାଗି ଯାଉଥିଲା । ୧୯୩୬ ମସିହାରେ ପୁରୀ ଜିଲାରେ ଭୟାବହ ନଈବଢ଼ି ହୋଇଥିଲା । ଦୟାନଦୀର ପଶ୍ଚିମପଟ ବନ୍ଧ କୁକୁଡ଼ାଘାଇ ଠାରେ ଭାଙ୍ଗିଗଲା । ଏହି ପଶ୍ଚିମ ପଟ ନଈବନ୍ଧ ନିକଟରେ ଲେକମାନେ ବନ୍ଧ ଉପରେ ଆଶ୍ରୟ ନେଲେ । ଭୁବନେଶ୍ୱରରୁ ପଣ୍ଡିତ ରଘୁନାଥ ମହାପାତ୍ର ବାଇଧର ସାମନ୍ତରା ପ୍ରଭୃତି ବ୍ୟକ୍ତିମାନେ ଭୁବନେଶ୍ୱରର ଏବଂ ଆଖପାଖ ଗ୍ରାମରୁ ଚୂଡା, ଚାଉଳ ସଂଗ୍ରହ କରି ବାଣ୍ଟିବାକୁ ଯାଇଥିଲେ । ଘାଇ ଭାଙ୍ଗିଥିବାରୁ ଗଙ୍ଗୁଆରେ ବହୁତ ପାଣି ବଢ଼ି ଯାଇ ସୁଅ ହେଇଥିଲା । ଗୋଟେ ଡଙ୍ଗାରେ ରିଲିଫ୍ ସାମଗ୍ରୀ ଲଦି ରଘୁବାବୁ, ବାଇଧର ସାମନ୍ତରା, ଭଗବାନ ଦାଶ, ଖୋର୍ଦ୍ଧା ତହସିଲଦାର, ଭୁବନେଶ୍ୱର ପୁଲିସ୍

ସବ୍‌ଇନିସ୍‌ପେକ୍ଟର, ଉଦୟନାଥ ମହାରଣା କଣ୍ଟ୍ରାକ୍ଟର, ନଳିନୀ ବାବୁ ଓଭରସିୟର ସାନ୍ତରାପୁରଠାରେ ତାରାହୁଡା ତଳୁ ଡଙ୍ଗାରେ ବସିଲେ । ଡଙ୍ଗାଟି ସୁଅ ମୁହଁରେ ପଡିଗଲା । ନାଉରିଆମାନେ ଡଙ୍ଗାକୁ ନିଜ ଆୟତ୍ତରେ ରଖି ପାରିଲେ ନାହିଁ । ଗଙ୍ଗୁଆ ଆରପଟେ ଥିବା ଗୋଟେ ବରଗଛରେ ବାଡେଇ ହୋଇ ବୁଡ଼ିଗଲା । ତହସିଲଦାର, ପୋଲିସ୍ ସବ୍-ଇନିସ୍‌ପେକ୍ଟର ବରଗଛରେ ଚଢ଼ିଗଲେ । ରଘୁବାବୁ, ବାଇଧର ସାନ୍ତରା, ଭଗବାନ ଦାଶ, ଉଦୟନାଥ ମହାରଣା ଏବଂ ନଳିନୀ ବାବୁ ଭାସିଗଲେ । ରଘୁବାବୁ, ବାଇଧର ସାମନ୍ତରା, ଭଗବାନ ଦାଶ ପହଁରା ଜାଣିଥିବାରୁ କପିଳେଶ୍ୱର ନିକଟରେ ଲାଗିଗଲେ । ଲୋକମାନେ ତାଙ୍କୁ ଉଠାଇ ଆଣିଲେ । ଚାରିଆଡ଼େ ହଲା ହୋଇଗଲା । ବହୁତ ଲୋକ ନଈକୂଳରେ ଠିଆ ହୋଇଗଲେ । ଆମେ ପିଲାମାନେ ଦେଖିବାକୁ ଯାଇଥିଲୁ । ଉଦୟନାଥ ମହାରଣା, ନଳିନୀ ବାବୁ ଭାସିଗଲେ । ତାଙ୍କର ମୃତଦେହ ବୋଧେ ମିଳିଲା ନାହିଁ ।

## ୟୁନିଅନ୍ ବୋର୍ଡ :-

ଭୁବନେଶ୍ୱର, କପିଳେଶ୍ୱର, ବଡ଼ଗଡ଼, କପିଳପ୍ରସାଦ ସୁନ୍ଦରପଦାକୁ ନେଇ ଭୁବନେଶ୍ୱର ୟୁନିଅନ୍ ବୋର୍ଡ ଗଢ଼ା ଯାଇଥିଲା । ମ୍ୟୁନିସ୍‌ପାଲିଟି ପରି ଏହାର ଭୋଟ ହୁଏ । ଯେଉଁମାନେ ଚଉକିଦାରି ଟାକ୍ସ ଦେଉଥାନ୍ତି ସେହିମାନେ ଭୋଟ ଦିଅନ୍ତି । ବଢ଼େଇବାଙ୍କରେ ଥିବା ବଡ଼ୁ ନିଯୋଗରେ ଭୋଟ ନିଆଯାଏ । ଖୋର୍ଦ୍ଧା ତହସିଲ୍‌ଦାର ଇଲେକ୍‌ସନ୍ ଅଫିସର ହୋଇଆସନ୍ତି । ଯେଉଁମାନେ ପ୍ରାର୍ଥୀ ହୋଇଥାନ୍ତି ସେମାନେ ଇଲେକ୍‌ସନ୍ ଅଫିସରଙ୍କ ପାଖରେ ଅଳ୍ପ ଛାଡ଼ି ବେଞ୍ଚରେ ବସନ୍ତି । ଭୋଟରମାନଙ୍କୁ ପଚରାଯାଏ ସେମାନେ ନାମ କହନ୍ତି । ଆଜିକାଲି ପରି ଭୋଟ ବାକ୍ସ ବା ମେସିନ୍ ନଥାଏ । ମୋର ନନା (ବାପା) ସବୁଥର ଭୋଟରେ ଠିଆ ହୁଅନ୍ତି । ଜିତନ୍ତି । ବନମାଳି ଗରାବଡୁ, ବଡ଼ଗଡ଼ରୁ, କିଶେଇ ସାନ୍ତରା, ବାନାମ୍ବର ପଟ୍ଟନାୟକ, ସୁନ୍ଦରପଦାରୁ ଜଗନ୍ନାଥ ଦାଶ, ରମେଶ ମିଶ୍ର ଇଉନିୟନ୍ ବୋର୍ଡର ମେମ୍ବର ହୋଇ ଆସିବାର ମୁଁ ଦେଖିଛି । ଥରେ ଶ୍ରୀଧର ଗରାବଡୁ ନନାଙ୍କୁ ହରାଇଥିଲେ । ସେଥର ପୁରୀ ଡିଷ୍ଟ୍ରିକ୍ଟ ବୋର୍ଡ ନନାଙ୍କୁ ନୋମିନେଟେଡ କରି ପଠାଇଥିଲେ । ଆମେ ସବୁ ପ୍ରଚାର କରୁ ।

ଆଜିକାଲି ପରି ନୁହେଁ । କେବଳ ସେହି ବଡ଼ୁ ନିଯୋଗ ଗେଟ୍ ପାଖରେ ଠିଆ ହୋଇ ଭୋଟରଙ୍କୁ କହୁ ନନାଙ୍କୁ ଭୋଟ ଦେବାପାଇଁ । ବଡ଼ଭାଇନା କେଦାର ମହାପାତ୍ର, ବାସୁ ଭାଇନା, କୈଳାସ ଭାଇନା, ମୁଁ ଏହି ପ୍ରଚାରରେ ଲାଗିଯାଉ । ଯେଉଁମାନେ ଭୋଟର ତାଙ୍କୁ ଘରୁ ଡାକି ଆଣୁ । ବାସୁଦେବ ମନ୍ଦିର ଦକ୍ଷିଣ ପଟେ ଯେଉଁଟା ଆନନ୍ଦ ବଜାର ହୋଇଛି ସେଇଟା ୟୁନିୟନ୍ ବୋର୍ଡର ଗାଡିଖାନା ଥିଲା । ତିନିଟା ବଳଦ, ତିନି/ଚାରିଟା ଗୋଟିକିଆ ବଳଦ ଶଗଡ଼ ଗାଡ଼ିଥିଲା । ସାହିମାନଙ୍କରୁ ଏହି ଗାଡ଼ିରେ ଅଳିଆ ଉଠାଯାଏ । ସାହିମୁଣ୍ଡମାନଙ୍କରେ ବତିଖୁଣ୍ଟ ଥାଏ । ସନ୍ଧ୍ୟାରେ ଜଣେ ଲୋକ ଗୋଟିଏ ଛୋଟ ସିଡ଼ି କିରାସିନି ଟିଣ ଧରି ବତିଖୁଣ୍ଟରେ ଥିବା ବଡ଼ ଡିବିରେ କିରାସିନ ତେଲ ପକାଇ ଲଗାଇ ଦେଇଯାଏ । ବାସୁଦେବ ମନ୍ଦିର ଦକ୍ଷିଣପଟ ପାଚେରିକୁ ଲାଗି ୟୁନିୟନ୍ ବୋର୍ଡ ଅଫିସ୍ ଦୁଇବଖରା କୋଠାଘର । ୰ ଦୀନବନ୍ଧୁ ମହାପାତ୍ର-କିରାଣି, ଭୀମବାରିକ ପିଅନ । ଭୀମ ବାରିକକୁ ପ୍ରାୟ ପାଖାପାଖି ଶହେ ବର୍ଷ ହେବ । ୟୁନିୟନ୍ ବୋର୍ଡ ଚାକିରି ପରେ ଭୀମବାରିକ ଏନ୍.ଏ.ସି. ମ୍ୟୁନିସ୍‌ପାଲଟିରେ ଚାକିରି କରି ପେନ୍‌ସନ୍ ପାଉଅଛି । ଆଜିକାଲି ଟିକିଏ ଟିକିଏ କଥାରେ ଥାନାକୁ ଯାଇ ମାଲିମକଦ୍ଦମା କରୁଛନ୍ତି । କିନ୍ତୁ ସେ ସମୟରେ ଆମ ଦାଣ୍ଡ ପିଣ୍ଡାରେ ପଞ୍ଚାୟତ ବସେ । ନନା, ବନମାଳି ଗରାବଡ଼ୁ ସାହିମାନଙ୍କରୁ ଭଦ୍ରଲୋକ ବସି ମୋକଦ୍ଦମା ନିଷ୍ପତ୍ତି କରିଦିଅନ୍ତି । ପ୍ରାୟ ସବୁ ପଞ୍ଚାୟତରେ ହରଚଣ୍ଡୀ ସାହିର ଅନ୍ଧ ୰ ଧଡ଼ୁବେହେରାକୁ ଡକାଯାଏ । ବେହେରା କାହାରିକୁ ଦେଖିପାରେ ନାହିଁ । ତେଣୁ ସେ ନ୍ୟାୟକଥା କହେ । ବେହେରା କଥା ପ୍ରାୟ ପଞ୍ଚାୟତ ଗ୍ରହଣ କରିଥାନ୍ତି ।

**କଂଗ୍ରେସ ଆନ୍ଦୋଳନ :-**

ପଣ୍ଡିତ ରଘୁନାଥ ମହାପାତ୍ର, ପଣ୍ଡିତ ନୀଳକଣ୍ଠ ଦାସ, ପଣ୍ଡିତ ଗୋଦାବରୀଶ ମିଶ୍ରଙ୍କର ପୁରୀ ଜିଲ୍ଲା ସ୍କୁଲରେ ସହପାଠୀ ଥିଲେ । ସେମାନେ ଚାକିରି ଛାଡ଼ି ଗୋପବନ୍ଧୁ ଦାସଙ୍କର ଆହ୍ୱାନ କ୍ରମେ କଂଗ୍ରେସ ଆନ୍ଦୋଳନରେ ଯୋଗଦେଲେ । ରଘୁବାବୁ କୁହୁଡ଼ି ମାଇନର ସ୍କୁଲରେ ହେଡ଼ମାଷ୍ଟର ଥିଲେ । ସେ ଚାକିରି ଛାଡ଼ି କଂଗ୍ରେସ ଆନ୍ଦୋଳନରେ ଯୋଗଦେଲେ ଏବଂ

ଭୁବନେଶ୍ୱରରେ କଂଗ୍ରେସ ଆନ୍ଦୋଳନ ଆରମ୍ଭ କଲେ । ଭୁବନେଶ୍ୱରର ଆଖପାଖ ଗ୍ରାମର ଯୁବକମାନେ ଏପରିକି ବାଲିଅନ୍ତା, ବାଲିପାଟଣା ଏରିଆରୁ ଲୋକମାନେ ଏହି କଂଗ୍ରେସ ଆନ୍ଦୋଳନରେ ଯୋଗଦେଲେ । ହରିଜନ ଆନ୍ଦୋଳନ, ବିଲାତି ଲୁଗା ବର୍ଜନ, ନିଶା ନିବାରଣ ଅଫିମ ଦୋକାନ ଆଗରେ ପିକେଟିଙ୍ଗ କରିବା, ବିଲାତି ଲୁଗା ପୋଡିବା, ଅରଟରେ ସୂତାକାଟି ଲୁଗା ପିନ୍ଧିବା ଏହି ସବୁ ଆନ୍ଦୋଳନ ଜୋର୍‌ରେ ଚାଲିଲା । ଏଥିପାଇଁ ବଢ଼େଇବାଙ୍କରେ, ରଥଗଡ଼ା ପଡ଼ିଆରେ ମିଟିଙ୍ଗ ହୁଏ । ବାହାରୁ କଂଗ୍ରେସର ବଡ଼ ବଡ଼ ନେତାମାନେ ଆସି ବକ୍ତୃତା ଦିଅନ୍ତି । ୧୯୩୫/୩୬ ବେଳକୁ ପଣ୍ଡିତ ଜବାହରଲାଲ୍ ନେହେରୁ ଭୁବନେଶ୍ୱର ଆସିଥିଲେ । ଭୁବନେଶ୍ୱର ପୋଷ୍ଟ ଅଫିସ୍ ସାମନାରେ ଖରାଖିଆ ବୈଦ୍ୟନାଥଙ୍କ ପର୍ଯ୍ୟନ୍ତ ବଡ଼ ପଡିଆ ଥିଲା । ସେହିଠାରେ ମିଟିଙ୍ଗ ହେଲା । ଆଖପାଖ ଗ୍ରାମମାନଙ୍କରୁ ହଜାର ହଜାର ଲୋକ ମିଟିଙ୍ଗରେ ଯୋଗ ଦେଇଥିଲେ । ଅଫିମ ଦୋକାନ ଆଗରେ ପିକେଟିଙ୍ଗ କରି ରଘୁବାବୁ, ଫକୀର ପୂଜାପଣ୍ଡା, ବଂଶୀଧର ଗରାବଡୁ, ଦାମ ଦାଶ ପ୍ରଭୃତି ଜେଲ ଗଲେ । ଏହି ସମୟରେ କଂଗ୍ରେସର ଚାରିଅଣା (୨୫ ପଇସା) ମେମ୍ବର ଫିସ୍ ସଂଗ୍ରହ କରାଯାଉଥିଲା । ବହୁତ ଲୋକ ମେମ୍ବର ହେଉଥିଲେ । ମୁଁ ସେହିଦିନରୁ ଆଜିପର୍ଯ୍ୟନ୍ତ କଂଗ୍ରେସ ମେମ୍ବର ଅଛି । ଏହି ସମୟରେ ମହାତ୍ମାଗାନ୍ଧି ହରିଜନ ଆନ୍ଦୋଳନ ଆରମ୍ଭ କଲେ । ପୁରୀ ଆସିଥିଲେ । ପୁରୀରେ ପଣ୍ଡାମାନେ ଜଗନ୍ନାଥ ମନ୍ଦିରରେ ହରିଜନ ପୁରାଇ ଦେଲେ ନାହିଁ । ମହାତ୍ମା ଗାନ୍ଧି ଜଗନ୍ନାଥ ରାସ୍ତାରେ ହରିଜନ ପଦଯାତ୍ରା ଆରମ୍ଭ କଲେ । ପୁରୀରୁ ବାହାରି ଚାଲି ଚାଲି ଆସିଲେ । ତାଙ୍କ ପଛେ ପଛେ ହଜାର ହଜାର ଲୋକ ଚାଲିଥାନ୍ତି । ଆମେ ସବୁ ଜଗନ୍ନାଥ ସଡ଼କର ଗୁଡିଆ ପୋଖରୀ ପର୍ଯ୍ୟନ୍ତ ଗଲୁ ଏବଂ ବାଲକାଟି ପର୍ଯ୍ୟନ୍ତ ଗାନ୍ଧିଙ୍କ ସଙ୍ଗେ ଚାଲି ଚାଲି ଆସିଲୁ । ବାଲକାଟିରେ ଗୋଟେ ବିରାଟ ସଭା ହେଲା । ୧୯୩୪ରେ ଭୁବନେଶ୍ୱରର ବହୁ ବିଶିଷ୍ଟ ଲୋକ ନନା, ବାସୁ ବଡୁ, ମଧୁ ମକଦ୍ଦମ ପ୍ରଭୃତି ଯାଇ ମହାତ୍ମା ଗାନ୍ଧିଙ୍କୁ ଭୁବନେଶ୍ୱର ଆସିବା ପାଇଁ ଅନୁରୋଧ କଲେ । ଗାନ୍ଧି କହିଲେ ଯଦି ଲିଙ୍ଗରାଜ ମନ୍ଦିରକୁ ହରିଜନ ଯିବେ ତେବେ ମୁଁ ଭୁବନେଶ୍ୱର ଯିବି । ଏମାନେ ସହମତ ହେଲେ

ନାହିଁ । ନିରାଶ ହୋଇ ଫେରିଲେ । ୨୩।୩।୧୯୩୮ ଡେଲାଙ୍ଗ ଘୋରଡିଆରେ କଂଗ୍ରେସ ଅଧିବେଶନ ହୋଇଥିଲା । ଆମେ ଭୁବନେଶ୍ୱରରୁ କେତେ ଜଣ ଯୁବକ ସାଇକେଲରେ ଗାନ୍ଧିଙ୍କୁ ଦେଖିବାକୁ ଯାଇଥିଲୁ । କସ୍ତୁରବା ଗାନ୍ଧି, ଗାନ୍ଧିଙ୍କୁ ନକହି ଜଗନ୍ନାଥଙ୍କ ଦର୍ଶନ କରିବାକୁ ପୁରୀ ଯାଇଥିବାରୁ ମହାତ୍ମା ଅନଶନ କଲେ । ସଭାକୁ ଆସିଲେ ନାହିଁ । ତେଣୁ ଆମେ ରାତିରେ ଡେଲାଙ୍ଗରେ ରହି ପରଦିନ ଗାନ୍ଧୀଙ୍କୁ ଦର୍ଶନ କରି ଆସିଲୁ ।

**ଅଶୋକାଷ୍ଟମୀ :-**

ଆଗେ ବର୍ତ୍ତମାନ ରଥଠାରୁ ଟିକିଏ ବଡ଼ ରଥ ହେଉଥିଲା । ରଥ ଗଲାବେଳେ ଯାହା ଘରେ ରଥ ଲାଗୁଥିଲା ସେ ଘରଭଙ୍ଗା ହେଉଥିଲା । ଆଜିକାଲି ପରି ରଥକୁ ପଛକୁ ହଟାଉ ନଥିଲେ । ଅସୁର କିଆରିରେ ରାସ୍ତା ନଥିଲା । ୧୯୫୦/୫୧ ବେଳକୁ ଭୁବନେଶ୍ୱର ରାଜଧାନୀ ହେବାପରେ ଅସୁର କିଆରିରେ ରାସ୍ତା ହେଲା । ରଥ ବେତଦଉଡିରେ ଟଣା ଯାଉଥିଲା । ବାଲିଅନ୍ତା ସାଆନ୍ତ ଘର ମୋଟା ମୋଟା ବେତ ଦଉଡି ୫/୧୦ ଟା ଦେଉଥିଲେ । ଏହି ରଥର ନାମ ଗୁଣ୍ଡିଚା ରଥ । ଚନ୍ଦ୍ରଶେଖର ଲିଙ୍ଗରାଜଙ୍କ ବିଜେ ପ୍ରତିମା, ରୁକ୍ମିଣୀ, ଦୋଳ ଗୋବିନ୍ଦ ଯାଆନ୍ତି । ଏହାର ଚାଳକ ଗୋଟିଏ ବଡ଼ କାଠର ତିଆରି ବ୍ରହ୍ମା ରଥରେ ସାମନା ପଟେ ବସନ୍ତି । ରଥ ଅସୁର କିଆରିରେ ସମୟେ ସମୟେ ବର୍ଷା ହୋଇଥିଲେ ୧୦/୧୫ ଦିନ ରହିଯାଏ । ଗଡ଼ମାନଙ୍କୁ ଲିଙ୍ଗରାଜଙ୍କ ପଣ୍ଡାମାନେ ମହାପ୍ରସାଦ ଧରି ରଥଟାଣିବାକୁ ନିମନ୍ତ୍ରଣ କରିବାକୁ ଯାନ୍ତି । ବଡ଼ଗଡ଼,ଝାଡ଼ପଡ଼ା, ବମିଖାଲ, ଜାଗମରା, ସୁନ୍ଦରପଦା, ଆଇଗିଣିଆ ପ୍ରଭୃତି ଗାଁମାନଙ୍କରୁ ଲୋକ ଶହ ଶହ ସଂଖ୍ୟାରେ ଆସି ରଥଟାଣନ୍ତି ।

**ଦିଅଁବିଭା ଶୀତଳ ଷଷ୍ଠୀ :-**

ଆମ ପିଲାଦିନେ ଶୀତଳଷଷ୍ଠୀ ଦିନ ଠାକୁରମାନେ (ଲିଙ୍ଗରାଜ, ପାର୍ବତୀ, ବାସୁଦେବ, କପିଳନାଥ) କେଦାରଗୌରୀ ମନ୍ଦିରରୁ ଆସିବାବେଳେ ଆଜିକାଲି ପରି ବିନ୍ଦୁସାଗର ଦକ୍ଷିଣ ପଶ୍ଚିମ କୋଣରେ ଗହୀରବିଲ ମଧରେ ପଶନ୍ତି । ଗହୀର ଭିତରେ ବଡ଼ ବଡ଼ ହାବିଳି ବାଣ ମରାଯାଏ । ମିଶ୍ର ସାହି,

ବାଣ ସାହି, ରଥସାହି ମାନେ ଆଗରୁ ହାବିଳି, ଚକ୍ରିବାଣ ତିଆରି କରନ୍ତି । ବାଉଁଶ ନଳିରେ ବାରୁଦ ଦେଇ ପ୍ରାୟ ୮/୧୦ ହଜାର ଥର ବାଡାନ୍ତି । ବାଡେଇବାର ଗଣତି ପଦ୍ଧତି ହେଲା (ତୁ ଏକ, ମୁଁ ଏକ, ଯେଉଁ ଏକ, ସେଇ ଏକ, ଏକ) ୫ ଥର ହେଲା । ଏହି ହାବିଳି ବାଣ ଭିଷଣ ଶବ୍ଦ କରି ବହୁ ଉପରକୁ ଯାଏ । ଚକ୍ରବାଣ ଜୋରରେ ୫୦ ଫୁଟ୍ ଆକ୍ରାନ୍ତରେ ବାଣ ଝୁଲାଁ ପଡ଼େ । ଜଣେ ମଜବୁତ ଲୋକ ଓଦା ଗାମୁଛା ଦୁଇ-ତିନିଟା ମୁଣ୍ଡରେ ପକାଇ ଚକ୍ରବାଣ ଖୁଣ୍ଟକୁ ଧରି ବୁଲେ ।

## ମଉଜ ମଜଲିସ ଓ ଯାତ୍ରାଦଳ, ସଙ୍ଗିତ ମେଳ :-

ଚନ୍ଦନ ଯାତ୍ରା ପରେ ହଳଦୀପାଣି ଠାରୁ ଦୁଇ ଚାରିଦିନ ଚନ୍ଦନ ଡଙ୍ଗାରେ ସେବକମାନେ ଯାଇ ବିନ୍ଦୁସାଗର ଦିପିଦଣ୍ଡିରେ ସଙ୍ଗୀତ କରନ୍ତି, ଭୋଜି କରନ୍ତି । ଖଣ୍ଡଗିରି ଯାତ୍ରାରେ ରାଣୀ ଗୁମ୍ଫାରେ ୩/୪ ଦିନ ପର୍ଯ୍ୟନ୍ତ ରହି ଭୋଜି, ସଙ୍ଗୀତ କରନ୍ତି । ଶୀତଦିନେ ୫୦/୬୦ ଜଣ ମିଶି ଚନ୍ଦକା ଜଙ୍ଗଲରେ ଯେଉଁ ଠାରେ ପାଣି ସୁବିଧା ଥାଏ ଯାଇ ଭୋଜି କରନ୍ତି । ଆମ ପିଲାଦିନେ ମାଧବ ପରମଗୁରୁ ଗୋଟେ ଯାତ୍ରା ଦଳ କରିଥିଲେ । ପରେ ବାସୁବାରିକ, ଦିଜ ସାହୁ, ବନବିହାରୀ, କୃଷ୍ଣ ବାରିକ ପ୍ରଭୃତି କେତେଜଣ ଯୁବକ ହରଚଣ୍ଡୀ ସାହିର ମଧ୍ୟ ଗୋଟେ ଯାତ୍ରା ଦଳ ଗଢ଼ିଥିଲେ । ଅର୍ଥାଭାବରୁ ଯାତ୍ରାଦଳ ବେଶିଦିନ ତିଷ୍ଠିଲା ନାହିଁ । କପିଳେଶ୍ୱରରେ ବାସୁଦେବ ଖୁଣ୍ଟିଆ ପ୍ରଭୃତି ଗୋଟେ ସଙ୍ଗୀତ ଦଳ କରିଲେ । ସେ ଦଳ ଅଳ୍ପ ବର୍ଷ ରହି ଭାଙ୍ଗିଗଲା । ଆମେ ସାଙ୍ଗମାନେ ଦୁଇଚାରିଥର କପାଳୀ ମନ୍ଦିର ପାଖରେ ବଢ଼େଇବାଙ୍କ ବଡ଼ମଠ ହତା ଭିତରେ ଘରୁ ସବୁ ଶାଢ଼ି, ପାଟ ଲୁଗା ନେଇ ଥେଟର କରୁ । ସୁନ୍ଦରପଦାରେ ଦେବସ୍ନାନ ପୂର୍ଣ୍ଣମୀକୁ ପ୍ରତିବର୍ଷ ସୁନ୍ଦରପଦାର ଯୁବକମାନେ ଥେଟର କରନ୍ତି । ଆମେ ସବୁ ଦେଖିବାକୁ ଯାଉ । ଚନ୍ଦନ ଯାତ୍ରା ପରେ କଟକ ଜିଲ୍ଲାରୁ (ନାଟଦଳ) ଯାତ୍ରା ଦଳ ଆସି କପାଳି ମନ୍ଦିର ପାଖରେ ବଡୁସାହିର ଏବଂ ଅନ୍ୟ ସାହିମାନଙ୍କରେ ଦୁଇଚାରି ରାତି ଯାତ୍ରା କରନ୍ତି । ସେମାନେ ବହୁତ କମ୍ ଟଙ୍କା ନିଅନ୍ତି, ଘର ପିଛା ଟ ୧/-, ଟ ୨/- ସାହିରେ ନାଟପାଇଁ ଚାନ୍ଦା ହୁଏ ।

ଚନ୍ଦନ ଯାତ୍ରା ୨୨ ଦିନ ଯାକ ରାତି ଚାପ ପରେ ଠାକୁରମାନେ କପାଳି ମନ୍ଦିରଠାରୁ ଲିଙ୍ଗରାଜ ମନ୍ଦିର ପର୍ଯ୍ୟନ୍ତ ୪ ଜାଗାରେ ଭୋଗଖାନ୍ତି । ସଙ୍ଗୀତ ହୁଏ । ଏବେ ମଧ୍ୟ ହେଉଛି । ଏବେ ବହୁତ ରାତିରେ ଠାକୁର ମାନେ ରାତି

ଚାପ ସାରି ଫେରୁଥିବାରୁ ବେଶି ଲୋକ ସଙ୍ଗୀତ ଦେଖିପାରୁ ନାହାନ୍ତି । କିନ୍ତୁ ଆମ ପିଲାଦିନେ ଠାକୁରମାନେ ରାତି ଚାପ ସାରି ପ୍ରାୟ ୯/୧୦ ଭିତରେ ଆସୁଥିଲେ । ପଟୁଆରରେ ବହୁତ ଲୋକ ସଙ୍ଗୀତ ଦେଖିବାକୁ ଆସୁଥିଲେ ଏବଂ ଚମ୍ପୁ ଗୀତ ସବୁ ବୋଲିବା ପାଇଁ ସଙ୍ଗୀତ ପିଲାମାନଙ୍କୁ ବରାଦ କରୁଥିଲେ । ଆଳି ପଣ୍ଡା (ପୂଜାପଣ୍ଡା) ବଂଶି ଗରାବଡୁ କାଳୀ ବେଶ ହେଉଥିଲେ ଏବଂ ପଛପଟେ ଗୋଟେ ମେଢ଼ ବା ଥାଟ ପିନ୍ଧି ନାଚୁଥିଲେ । ତାଙ୍କ ସଙ୍ଗେ ସଙ୍ଗୀତ ପିଲା ନାଚୁଥିଲେ ଏହି ନାଚ ଦେଖିବା ପାଇଁ ବହୁତ ଲୋକ ଆସୁଥିଲେ ।

ଆମ ପିଲାଦିନେ ଭୁବନେଶ୍ୱରରେ ସେବକମାନେ ପାଚିଲା ଗାମୁଛା କରନ୍ତି । ଜାନୁଆରୀ, ଫେବୃଆରୀ ମାସବେଳକୁ ଚନ୍ଦନପୁର ଆଡୁ ତନ୍ତବୁଣା ୫ ହାତି ଗାମୁଛା କିଣିକରି ଆଣନ୍ତି । ପାଚିଲା ଗାମୁଛା କରିବା, ଗାମୁଛାକୁ ପଚେଇବା ବହୁତ ନିକିମା କାମ । ଗାମୁଛା ପଚାଇବାପାଇଁ ପ୍ରାୟ ଦୁଇ ମାସ ଖଣ୍ଡେ ଲାଗିଯାଏ । ପ୍ରତ୍ୟେକ ଦିନ ଗାମୁଛା ଧୋଇ ଛେନାପାଣି, ମିଶ୍ରିପାଣି ପ୍ରଭୃତି ଦେଇ ଛାଇରେ ଶୁଖାନ୍ତି । ପାଗ ବିଗିଡ଼ି ଗଲେ ଗାମୁଛା କଳାଚିଟି ମାରିଯାଏ । ଅଶୋକାଷ୍ଟମୀରେ, ଚନ୍ଦନ ଯାତ୍ରା ସମୟରେ, ଦୁଇଟା ପାଚିଲା ଗାମୁଛା କାନ୍ଧରେ ପକାଇ, ରଥରେ, ଚନ୍ଦନ ଯାତ୍ରାରେ ସେବକ ମାନେ ବସନ୍ତି । କେହି କେହି ସେବକ ମନ୍ଦିରକୁ ପାଚିଲା ଗାମୁଛା କାନ୍ଧରେ ପକାଇଯାନ୍ତି ।

## ଗୋବରା ଚଢ଼େଇ ଲଢ଼େଇ :-

ଆମ ପିଲାଦିନେ ଭୁବନେଶ୍ୱର ଚାରିପଟେ ଜଙ୍ଗଲ ଥିଲା । ସବରମାନେ ବର୍ଷାଦିନେ ଗୋବରା ଚଢ଼େଇ ଆଣି ବିକ୍ରୟ କରନ୍ତି । ସାହି ମାନଙ୍କରେ ଲୋକମାନେ ଗୋବରା ଚଢ଼େଇ କିଣିକରି ଭଲଭାବରେ ଖାଇବାକୁ ଦେଇ ରଖନ୍ତି । ଶୀତଦିନେ କପାଳୀମନ୍ଦିର ବେଢ଼ାରେ ଗୋବରା ଚଢ଼େଇ ଲଢ଼େଇ ହୁଏ । ଦେଖିବାକୁ ଭାରି ଭଲ ଲାଗେ । ବହୁତ ଲୋକ ଗୋବରା ଚଢ଼େଇ ଲଢ଼େଇ ଦେଖିବାକୁ ଜମା ହୁଅନ୍ତି । ଆମେ ପିଲାମାନେ ଯାଇ ଦେଖୁ ।

**ନଡ଼ିଆ ଲଢ଼େଇ :-**

ଗୋବରା ଚଢ଼େଇ ଲଢ଼େଇ ଭଳି ମୋର ମନେ ପଡୁଛି ନଡ଼ିଆ ଲଢ଼େଇ କଥା । ମୋଟା ସଢ଼େଇ ନଡ଼ିଆ ଗାଁ ମାନଙ୍କରୁ ଜଣେ ଜଣେ ୧୦/୧୫ଟା ନଡ଼ିଆ କିଣିକରି ଆଣି ରଖିଥାନ୍ତି । ଗହ୍ମାପୂର୍ଣ୍ଣିମା ବେଳକୁ ବଡ଼ଦାଣ୍ଡରେ ନଡ଼ିଆ ଲଢ଼େଇ ହୁଏ । ଯାହା ନଡ଼ିଆ ଅନ୍ୟଲୋକର ନଡ଼ିଆ ଫଟାଇ ଦିଏ ସେ ଲୋକ ଫଟା ନଡ଼ିଆ ତକ ନିଏ । ଏହି ନଡ଼ିଆ ଲଢ଼େଇ ଦେଖିବାକୁ ବହୁତ ଲୋକ ଜମା ହୁଅନ୍ତି । ଜଣେ ଜଣେ ୧୦/୧୫ ନଡ଼ିଆ ଜିଣନ୍ତି । ଆଜିକାଲି ଏହି ଗହ୍ମାପୂର୍ଣ୍ଣିମା ଦିନ ବଜାରରେ ବହୁତ ଦୋକାନ ହୋଇ ରାକ୍ଷୀ ବିକ୍ରୟ ହେଉଛି । କିନ୍ତୁ ଆମପିଲାଦିନେ ଗ୍ରାମର ପୁରୋହିତ ବ୍ରାହ୍ମଣ ମାନେ ଆସି ଘରେ ଆମ ସମସ୍ତଙ୍କୁ ପଇତା ଦେଇ ଦକ୍ଷିଣା ନିଅନ୍ତି । ଆମ ଗାଁରେ ସେତେବେଳେ ବହୁତ ଲୋକ ଚାଷ କରୁଥିଲେ । ଗହ୍ମାପୂର୍ଣ୍ଣମୀ ଦିନ ବଳଦମାନଙ୍କୁ ଗାଧୋଇ ଦେଇ ବଳଦଙ୍କ ବେକରେ ଫୁଲମାଳ, ଶିଙ୍ଗରେ ନାଲି କନା ବାନ୍ଧି ଘରକୁ ନିଅନ୍ତି । ବଳଦ ଗୁହାଳ ଭଲ ଭାବରେ ସଫା କରାଯାଇଥାଏ । ଘରେ ପିଠା, ଖିରି ହୁଏ । ବଳଦମାନଙ୍କୁ ଖାଇବାକୁ ଦିଆଯାଏ । ଆମେ ଖାଉ ।

ଆମ ଘରେ ସେତେବେଳେ ଚାରିଜଣ ଲୋକ ଚାଷକାମ ପାଇଁ ଏବଂ ଗାଈ ଜଗିବାକୁ ଜଣେ ବେହେରା ଥିଲେ । ସମସ୍ତେ ପିଠା, ଖିରି ଖାଆନ୍ତି । ଆମର ସେତେବେଳେ ଯେତେଜଣ ଚାଷୀ, (ଭୁବନେଶ୍ୱର, କପିଳେଶ୍ୱର, ପୋଖରୀପୁଟ, ବରଗଡ଼ ସାମନ୍ତରାପୁରର ଯେତେଜଣ ଆମ ବିଲ ଚାଷ କରୁଥାନ୍ତି) ସମସ୍ତେ ଆମ ଘରେ ଖାଆନ୍ତି ।

**ଖେଳ କସରତ :-**

ଆମେ ପିଲାଦିନେ ଦଶ/ବାର ଜଣ ପିଲା ଏକାଠି ହୋଇ 'ବାଗଡ଼ଗୁଡ୍ରୁ' ଖେଳୁ । ଓଡ଼ିଶାରେ ପ୍ରାୟ ସବୁଆଡ଼େ ଏହି ଖେଳ ହୁଏ । ଅନ୍ୟଆଡ଼େ ଏହାକୁ ଅନ୍ୟ ନାଆଁରେ କହନ୍ତି । କେହି କେହି କବାଡ଼ି' ବା କେହି କେହି ଡୁ-ଡୁ ଖେଳ ବୋଲି କହନ୍ତି ।

ପଡ଼ିଆ ମଝିରେ ଗାରପଡ଼େ । ପଡ଼ିଆ ଦୁଇ ପଟେ ସମାନ ସମାନ ହୋଇ ମଝି ଗାର ଠାରୁ ୮/୧୦ ଫୁଟ ଛାଡ଼ି ଦୁଇ ଭାଗ ହୋଇ ଛିଡ଼ା ହୁଅନ୍ତି ।

ଛଣେ ପିଲା ଡୁ, ଡୁ ଡାକି ଗାର ଡ଼େଇଁ ଆରପଟକୁ ଯିବ ଏବଂ ଗୋଟେ ପିଲାକୁ ଛୁଇଁ ଦେଇ ଆସିଲେ ସେ ପିଲା ବସିବ ଆଉ ଖେଳିପାରିବ ନାହିଁ। କିନ୍ତୁ ଯଦି ପିଲାମାନେ ତାକୁ ଧରି ପକାନ୍ତି ଏବଂ ସେ ଗାର ଛୁଇଁ ପାରେ ନାହିଁ ସେ ମଲା । ଆଉ ଖେଳି ପାରିବ ନାହିଁ। ଏହି ଡୁ ଡୁ ଖେଳ ଛଡ଼ା ଆମେ ସ୍କୁଲ ପଢ଼ିଆରେ ଫୁଟବଲ୍ ଖେଳୁ ।

ମଧୁ ଗରାବଡୁ ଆମକୁ କପାଳୀ ମନ୍ଦିର ବେଢ଼ାରେ ଥିବା ବ୍ରାହ୍ମଣ ନିଯୋଗ ଘରେ ସକାଳ ବେଳା ୬ଟାରେ ଦଣ୍ଡ, ବଇଠକ, ଗଦାଖେଳ ପ୍ରଭୃତି ଶିଖାଉଥିଲେ ।

## ଭୁବନେଶ୍ୱରର ମଠ :-

ବର୍ତ୍ତମାନ ରାଜଧାନୀ ହେବା ପରେ ଭୁବନେଶ୍ୱରରେ ବହୁତ ମଠ ମନ୍ଦିର ହେଲାଣି। ପ୍ରତିବର୍ଷ କେତେ ମନ୍ଦିର ମଠ ତିଆରି ହେଉଛି। କିନ୍ତୁ ମୋ ପିଲାଦିନେ (୧୯୩୦) ଲିଙ୍ଗରାଜ ମନ୍ଦିର ଉଭୟ ପଟେ ୫ ଗୋଟି ପ୍ରାଚୀନ ମଠ ଥିଲା। ଶିବ ତୀର୍ଥମଠ, ଶଙ୍କରାନନ୍ଦ ମଠ, ସଦାବ୍ରତ ମଠ, ଭାରତୀ ମଠ ଓ ରାଧାକୃଷ୍ଣ ମଠ। ଏହାଛଡ଼ା ରାମକୃଷ୍ଣ ମିଶନ୍ ମଠ ଓ ଗୌଡ଼ୀୟ ମଠ (ଶ୍ରୀ ଚୈତନ୍ୟ) ଥିଲା । ଏହି ମଠ ସବୁ ଭଲରେ ଚାଲୁଥିଲା । ଏହି ମଠମାନଙ୍କର ବହୁତ ଜମିବାଡ଼ି ଥିଲା। ବିଶେଷତଃ ଭାରତୀ ମଠର ବହୁତ ଜମି ଥିଲା।

ଆଗେ ବହୁତ ନାଗା ସନ୍ନ୍ୟାସୀ ପୁରୀ ଆସୁଥିଲେ । ବାଟରେ ଭୁବନେଶ୍ୱର ଦେଇ ପୁରୀ ଯାଉଥିଲେ। ଭାରତୀ ମଠ ସେମାନଙ୍କର ସମସ୍ତ ଖାଇବା ପିଇବା ଖର୍ଚ୍ଚ ବହନକରୁ ଥିଲେ। ଶହ ଶହ ସଂଖ୍ୟାରେ ନାଗା ସନ୍ନ୍ୟାସୀ ଭୁବନେଶ୍ୱର ଦେଇ ପୁରୀ ଯାନ୍ତି। ଅନ୍ୟ ମଠ ମାନଙ୍କର ମୁଖ୍ୟ ମଠ ପୁରୀରେ ଅଛି। ଏହି ମଠ ମାନଙ୍କର ଲିଙ୍ଗରାଜ ମନ୍ଦିରରେ ଭୋଗ ଖଞ୍ଜା ଅଛି। ଏହାଛଡ଼ା ଲିଙ୍ଗରାଜ ମନ୍ଦିରରେ ଭୋଗ ରାନ୍ଧିବା ପାଇଁ ରୋଷଘର ଚୁଲିଅଛି ।

୧୯୧୭/୧୮ ମସିହା ବେଳେ କଲିକତା ବେଲୁର ମଠର ସ୍ୱାମୀ ବ୍ରହ୍ମାନନ୍ଦ ଭୁବନେଶ୍ୱର ଆସିଥିଲେ, ଶୁଣିଛି । ତାଙ୍କୁ ଭୁବନେଶ୍ୱରର ଶାନ୍ତ ପରିବେଶ ଭାରି ଭଲ ଲାଗିଲା । ଏଠାରେ ରାମକୃଷ୍ଣ ମଠ ନିର୍ମାଣପାଇଁ ସରକାରଙ୍କ ଠାରୁ ଜମିନେଇ ବର୍ତ୍ତମାନ ଯେଉଁଠାରେ ରାମକୃଷ୍ଣ ମଠ ଅଛି

ସେହିଠାରେ ମଠ ତିଆରି କଲେ । ୧୯୨୦ ବେଳକୁ ସ୍ୱାମୀ ବ୍ରହ୍ମାନନ୍ଦ ମଝିରେ ମଝିରେ ଏ ମଠରେ ରହୁଥିବାର ଶୁଣିଛି ।

ମୋ ପିଲାଦିନେ ୭/୮ ବର୍ଷ ବେଳେ ମୁଁ ନନାଙ୍କ ସଙ୍ଗରେ ମଠକୁ ଯାଏ । ମଠର ବାର୍ଷିକ ଉତ୍ସବକୁ ହଜାର ହଜାର ସଂଖ୍ୟାରେ ଲୋକ ମଠରେ ଖାଆନ୍ତି । ଆଖପାଖର ଗ୍ରାମ ମାନଙ୍କର ବଦାନ୍ୟ ବ୍ୟକ୍ତି ମାନେ ଚାଉଳ ପରିବା ପ୍ରଭୃତି ସାହାଯ୍ୟ କରନ୍ତି । ନନା (ଗୋପୀନାଥ ମହାପାତ୍ର) ଏବଂ ସ୍ଥାନୀୟ ଭଦ୍ରବ୍ୟକ୍ତି ମାନେ ଆସି ବୁଝାସୁଝା କରନ୍ତି । ବଳେଇ ମହାରାଜ ଜୀବନ ମହାରାଜ, ସୂର୍ଯ୍ୟ ମହାରାଜଙ୍କ କଥା ମନେ ଅଛି । ବଳେଇ ମହାରାଜ ମଠର ସମସ୍ତ ଦାୟିତ୍ୱରେ ଥାନ୍ତି । ଜୀବନ ମହାରାଜ, ଡାକ୍ତରଖାନା ଦାୟିତ୍ୱରେ ଥାନ୍ତି । ଯଦିଓ ବର୍ତ୍ତମାନ ଯେଉଁ ମୁନିସିପାଲଟି ଡାକ୍ତରଖାନା ଅଛି ସେତେବେଳେ ଡିଷ୍ଟ୍ରିକ୍ଟ ବୋର୍ଡ ଡାକ୍ତରଖାନା ଥାଏ । ରୋଗୀ ଡାକ୍ତରଖାନାକୁ ପ୍ରାୟ ଆସନ୍ତି ନାହିଁ । କିନ୍ତୁ ରାମକୃଷ୍ଣ ମିଶନ ଡାକ୍ତରଖାନାରେ ବହୁତରୋଗୀ ହୁଅନ୍ତି । ଡାକ୍ତରଖାନାରେ ହୋମିଓପାଥି ଓ ଏଲୋପାଥି ଔଷଧ ମାଗଣାରେ ଦିଆଯାଏ । ଏପରିକି ଭୁବନେଶ୍ୱରର କୌଣସି ରୋଗୀ ଯଦି ଡାକ୍ତରଖାନାକୁ ଆସି ପାରନ୍ତି ନାହିଁ; ଜୀବନ ମହାରାଜ ସନ୍ଧ୍ୟାବେଳେ ବୁଲିବାକୁ ଗଲାବେଳେ ସେ ରୋଗୀଙ୍କୁ ଦେଖି ଔଷଧ ଦିଅନ୍ତି । ଅତି ଗରିବ ଲୋକଙ୍କୁ ରାମକୃଷ୍ଣ ମିଶନ ତରଫରୁ ମାଗଣା ଔଷଧପତ୍ର ଏବଂ ପଥ୍ୟପାଇଁ ସାହାଯ୍ୟ କରନ୍ତି । ଏହି ସମୟରେ ବଡ଼ଗଡ଼ର ଭଗବାନ ମହାନ୍ତି ଏହି ଡାକ୍ତରଖାନାରେ ଔଷଧ ବିତରଣ କରୁଥିଲେ । କଣ୍ଟାକୁର ୬ ଲିଙ୍ଗରାଜ ମହରଣାଙ୍କ ବାପା ମଧ୍ୟ ମଠରେ ସନ୍ନ୍ୟାସୀ ହୋଇ ମଠରେ ରହୁଥିଲେ ଓ ମଠର କୋଠାବାଡ଼ି କଥା ବୁଝନ୍ତି ।

ମୁଁ ବ୍ରତ ହେବାର ୭/୮ ଦିନ ପରେ ରାମକୃଷ୍ଣ ମିଶନକୁ ଗଲି । ମଠରେ ବଳେଇ ମହାରାଜ ଦେଖାହେଲେ । ତାଙ୍କୁ ମୁଣ୍ଡିଆ ମାରିଲି । ବଳେଇ ମହାରାଜ କହିଲେ ତୁ ବ୍ରତଘରରେ କଣ ଶ୍ଳୋକ ବୋଲିଲୁ ବୋଲ । ମୁଁ ବୋଲିଲି । ଆଗେ ବ୍ରତଘର ପରେ ଫୁଲସଭା ହୁଏ ଯେଉଁ ପିଲା ବ୍ରତ ହୋଇ ଥାଏ ଗୋଟେ ଦିଇଟା ଶ୍ଳୋକ ବୋଲେ । ଅନ୍ୟମାନେ ଶ୍ଳୋକ ବୋଲନ୍ତି । ଆଜିକାଲି ଆଉ ପ୍ରାୟ ସେପରି ଶ୍ଳୋକ ବୋଲାଯାଉନାହିଁ । ଏପରିକି ଫୁଲସଭାରେ ଘଣ୍ଟେଖଣ୍ଡେ

ଶ୍ଲୋକ ବୋଲା ହେଉଥିଲା ।

ବଲେଇବାବା ମୋତେ କହିଲେ ତୁ ଗାୟତ୍ରୀ ଶିଖିଲୁକି ନାହିଁ ? ମୁଁ ନାହିଁ କଲି । ଜଣେ ସନ୍ନ୍ୟାସୀଙ୍କୁ ଡାକି କହିଲେ । ଏ ପିଲାକୁ ନେଇ ଠାକୁରଙ୍କ ଭୋଗ (ଫଳଭୋଗ) ଦେଇ ଗାୟତ୍ରୀ ଶିଖାଅ । ଗାୟତ୍ରୀ ମୁଖସ୍ତ କରି ବୋଲିଲେ ଛାଡିବି । ମୁଁ ଗାୟତ୍ରୀ ମୁଖସ୍ତ କରି ଭଲ ଭାବରେ ବୋଲିଲି ମୋତେ ଛାଡିଲେ । ପ୍ରକୃତରେ ତାଙ୍କର କେତେ ସ୍ନେହ ସହାନୁଭୂତି ଥିଲା । ତାଙ୍କୁ ଦେଖିଲେ ଆପେ ଆପେ ମୁଣ୍ଡ ନଇଁଯାଉଥିଲା ।

**ଚିକିତ୍ସା :-**

ଆମ ବଂଶ ଲିଙ୍ଗରାଜ ମହାପ୍ରଭୁଙ୍କର ରାଜବୈଦ୍ୟ ବଂଶ । ମୋର ଜନ୍ମବେଳକୁ ମୋର ବଡ଼ବାପା ଧରମୁ ମହାପାତ୍ର, ସାନବାପା ବାଞ୍ଛାନିଧି ମହାପାତ୍ର କବିରାଜି କରୁଥିଲେ । ଏହାଛଡ଼ା ଜାଗମରାରେ ଏବଂ ବାଲିଅନ୍ତାରେ ଦୁଇଜଣ କବିରାଜି କରୁଥିବାର ଜାଣିଛି (ସେମାନଙ୍କ ନାଁ ମନେନାହିଁ) । ବାଞ୍ଛାନିଧି ମହାପାତ୍ରଙ୍କୁ ଲୋକମାନେ ନିଧିବୈଦ୍ୟ ବୋଲି ଡାକନ୍ତି । ସେ ଖାଲି କବିରାଜି କରୁଥିଲେ ତା ନୁହେଁ ସେ ପ୍ରକୃତରେ ବଡ଼ ପଣ୍ଡିତ ଥିଲେ । ସେ ପ୍ରତ୍ୟେକଦିନ, ଦିନ ଦିଟାରୁ ଚାରିଟା ପର୍ଯ୍ୟନ୍ତ କବିରାଜି ପୁସ୍ତକମାନ ପଢ଼ନ୍ତି । ଯଦି ଯାହା ନୂଆନୂଆ ଔଷଧ ଭାଗ ଦେଖନ୍ତି ତାକୁ ଗୋଟେ ଖାତାରେ ଟିପି ରଖନ୍ତି । ଓଡ଼ିଶାର ବିଶିଷ୍ଟ କବିରାଜ ଅନନ୍ତ ତ୍ରିପାଠୀ, ଗଞ୍ଜାମର କବିରାଜ ମହେଶ୍ୱର ମହାପାତ୍ର ଆମ ଘରକୁ ଆସି ତାଙ୍କ ସଙ୍ଗେ ଚିକିତ୍ସା ଏବଂ ଔଷଧ ବିଷୟ ବହୁସମୟ ଆଲୋଚନା କରିବାର ମୁଁ ଦେଖିଛି ।

(କବିରାଜ ମହେଶ୍ୱର ମହପାତ୍ରଙ୍କ ବିଷୟରେ କିଛି ଲେଖିବି) ବାପା ସକାଳ ୯ଟା ମଧରେ ନିତ୍ୟକର୍ମ ସାରି ଗୋଟେ ବଡ଼ ଔଷଧ ଡ଼ବା କାଖରେ ଜାକି ରୋଗୀ ଦେଖି ବାହାରନ୍ତି । ସେ ଚାଲି ଚାଲି ବଡ଼ଗଡ଼, କପିଳେଶ୍ୱର, ସୁନ୍ଦରପଦା ପ୍ରଭୃତି ଗ୍ରାମମାନଙ୍କୁ ଯାଇ ରୋଗୀ ଦେଖି ଔଷଧ ଦିଅନ୍ତି । ବେଶୀ ଔଷଧ ଦବାକୁ ଥିଲେ ରୋଗୀର ଲୋକମାନେ ଆସି ଘରୁ ଔଷଧ ନିଅନ୍ତି । କେବେ କେବେ ବାଲକାଟି, ରଥିଜେମା ଚାଲିକରି ଯାଇ ରୋଗୀ ଦେଖନ୍ତି । ମଝିରେ ମଝିରେ ତାଙ୍କର ଭଉଣୀଘର ନିମାପଡ଼ା ପାଖ ବିଶ୍ୱାଳ ସାହିରେ

ଯଦି କେହି ତାଙ୍କୁ ଚିକିତ୍ସା ପାଇଁ ଡାକନ୍ତି ସେ ଚାଲିକରି ଯାଇ ମୋ ପିଉସୀ ନାନୀ (ତାଙ୍କ ଭଉଣୀ) ଘରେ ଦୁଇ/ଚାରିଦିନ ରହି ରୋଗୀ ଦେଖି ଫେରନ୍ତି । ବାପା ଭାରି ନୈଷ୍ଠିକ । ସେ ପିଆଜ, ରସୁଣ, ମାଛ, ମାଂସ ଖାଆନ୍ତି ନାହିଁ । ତେଣୁ ସେ କେବଳ ତାଙ୍କ ଭଉଣୀ ଘରଛଡ଼ା ଅନ୍ୟ କୌଣସି ବନ୍ଧୁବାନ୍ଧବ ଘରେ ଖାଆନ୍ତି ନାହିଁ ।

ମୋ ପିଲାଦିନେ ବହୁତ ବଙ୍ଗାଳି ଜଳବାୟୁ ପରିବର୍ତ୍ତନ ପାଇଁ ଭୁବନେଶ୍ୱର ଆସି ରହୁଥିଲେ । ସେମାନଙ୍କ ମଧ୍ୟରୁ ଅନେକ ବାପାଙ୍କ ପାଖରେ ଚିକିତ୍ସିତ ହୁଅନ୍ତି । ବାପା ରୋଗୀର ନାଡ଼ିଦେଖି ରୋଗର ନିଦାନ କରିପାରୁଥିଲେ । ମୁଁ ଗୋଟେ ଘଟଣା ଦେଖିଛି । ଭିଙ୍ଗାରପୁର ଚଉଧୁରୀ ବଂଶ ସେତେବେଳେ ବଡ଼ଲୋକ ଥିଲେ । ତାଙ୍କ ବଂଶର ଜଣଙ୍କର ନଳିଗୋଡ଼ରେ ଘା' ହୋଇ ଶୁଖୁନଥାଏ, ଜ୍ୱର ହେଉଥାଏ । ସେ କଲିକତା ଯାଇ ଚିକିତ୍ସିତ ହୋଇ ଭଲ ନ ହେବାରୁ ଭୁବନେଶ୍ୱରରେ ଘର ଭଡ଼ା ନେଇ ଥାଆନ୍ତି । ତାଙ୍କ ପଣ୍ଡା ତାଙ୍କୁ କହିଲା ଆପଣ ଏତେ ଚିକିତ୍ସା କଲେଣି ଆମର ଏଠାରେ ଜଣେ ପୁରୁଣା କବିରାଜ ଅଛନ୍ତି । ଯଦି, ଆପଣ କହିବେ ମୁଁ ତାଙ୍କୁ ଡାକି ଆଣିବି । ସେ ବାପାଙ୍କୁ ଡାକି ନେଲେ । ବାପା ତାଙ୍କ ନାଡ଼ି ଦେଖି କହିଲେ ତୁମ୍ଭର ଅଙ୍ଗରେ କେଉଁଠାରେ କ୍ଷତ ହୋଇଛି । ସେ ଘା' ନ ଶୁଖିଲେ ଜ୍ୱର ଭଲ ହେବ ନାହିଁ । ଖାଲି କହିଲେ ନାହିଁ ଶ୍ଳୋକ ବୋଲି ବୁଝାଇ ଦେଲେ । ସେ ବାପାଙ୍କୁ ତାଙ୍କ ନଳିଗୋଡ଼ ଘା' ଦେଖାଇଲେ । ଆଜିକାଲି ଡାକ୍ତର ସେ ଘା'କୁ ଦେଖିଲେ କ୍ୟାନ୍‌ସର ବୋଲି କହିଥାନ୍ତେ । ବାପା କହିଲେ ତୁମେ ଭୁବନେଶ୍ୱରରେ ଏକମାସ ରହିଲେ ମୁଁ ଏ ଘା' ଭଲକରି ଦେବି । ବାପାଙ୍କ କଥା ମାନି ସେ ବାପାଙ୍କ ପାଖରେ ଚିକିତ୍ସିତ ହେଲେ । ବାପା ସାତ ଆଠଦିନ ଔଷଧ ଖାଇବାକୁ ଦେଇ ଘା'ରେ ମଲମ ମାରି ଘା' ଶୁଖାଇଲେ । ଘା' ଭଲ ହୋଇ ଆସିଲା ଏବଂ ଜ୍ୱର ଛାଡ଼ିଗଲା । ପ୍ରାୟ ୧୫/୨୦ ଦିନରେ ସେ ଘା' ଶୁଖିଗଲା । ସେ ଖୁସିରେ ବାପାଙ୍କୁ ବରହମ୍‌ପୁରୀ ପାଟ ଏବଂ ବହୁତ ଟଙ୍କା ଦେଇଥିଲେ ।

ଏଇଠି ମୋର ଆଉ ଦୁଇଟି କଥା ମନେ ପଡୁଛି, ତାହା ଲେଖୁଛି । ଓଡ଼ିଶାର ପୂର୍ବତନ ବାଚସ୍ପତି ୰ସତ୍ୟପ୍ରିୟ ମହାନ୍ତିଙ୍କ ଘର ବାଲକାଟି ବସନ୍ତପେଡ଼ି

ଶାସନ ମକଦ୍ଦମ ସାହିରେ । ତାଙ୍କର ମକଦ୍ଦମି ଥିଲା । ସେ ଖୁବ୍ ବଡ଼ଲୋକ ମଧ୍ୟ ଥିଲେ । ତାଙ୍କ ସ୍ତ୍ରୀ ବେମାର ହେଲେ । ବାପାଯାଇ ତାଙ୍କ ଗୋପାଳଜୀଉ ମନ୍ଦିରରେ ରହି ଔଷଧ ତିଆରି କରି ଭଲ କରିଥିଲେ । ଆଚାର୍ଯ୍ୟ ହରିହର ଦାସ ଭୁବନେଶ୍ୱର ଆସିଥିଲେ । ବାପାଙ୍କ ସଙ୍ଗେ ଦେଖା ହେଲା । ସେ ବାପାଙ୍କୁ ଦେଖି ମୁଣ୍ଡିଆ ମାରିଲେ । ଆଚାର୍ଯ୍ୟଙ୍କ ସଙ୍ଗରେ ପଣ୍ଡିତ ୰ ରଘୁନାଥ ମହାପାତ୍ର ଥିଲେ । ତାଙ୍କୁ ଆଚାର୍ଯ୍ୟ ମହାଶୟ କହିଲେ ମୁଁ ପିଲାଦିନେ ବେମାର ହୋଇଥିଲି ମତେ ବୈଦ୍ୟେ ଭଲ କରିଥିଲେ । ଓଡ଼ିଶାର ପୂର୍ବତନ ମନ୍ତ୍ରୀ, ‘ସମାଜ’ ସମ୍ପାଦକ ୰ପଣ୍ଡିତ ଲିଙ୍ଗରାଜ ମିଶ୍ରଙ୍କ ନନା (ବାପା) ଭୁବନେଶ୍ୱରରେ ସଂସ୍କୃତ ଟୋଲ୍‌ର ପଣ୍ଡିତ ଥିଲେ । ସେ ବାପାଙ୍କୁ ସଂସ୍କୃତ ପଢ଼ାଉଥିଲେ । ଆଚାର୍ଯ୍ୟଙ୍କ ଘର ଶ୍ରୀରାମଚନ୍ଦ୍ରପୁର ଏବଂ ଲିଙ୍ଗରାଜ ମିଶ୍ରଙ୍କ ଘର ସେହି ଗ୍ରାମରେ । ଆଚାର୍ଯ୍ୟ ମହାଶୟ ଲିଙ୍ଗରାଜ ମିଶ୍ରଙ୍କର ବନ୍ଧୁ ଥିଲେ । ଆଚାର୍ଯ୍ୟଙ୍କ ଦେହ ଭଲ ନହେବାରୁ ସେ ବାପାଙ୍କ ପାଖକୁ ଆଣି ଚିକିତ୍ସା କରାଇଥିଲେ । ବାପା ତାଙ୍କୁ ଔଷଧ ଦେଇ ଭଲ କରିଥିବା କଥା ଆଚାର୍ଯ୍ୟ ମହାଶୟ କହିଲେ ।

ଆଉଗୋଟେ କଥା ଦେଖିଛି ଲେଖୁଛି । କଲିକତାର ଜଣେ ବଙ୍ଗୀୟ ଜମିଦାର ଜଳବାୟୁ ପରିବର୍ତ୍ତନରେ କେଦାରଗୌରୀ ନିକଟ ଠାକୁରବାଡ଼ିରେ (ଦୁଇ ମହଲା ଭଡ଼ାଘରେ) ଥିଲେ । ତାଙ୍କର ତିନିବର୍ଷର ଏକମାତ୍ର ପୁଅ ଥିଲା । ତାକୁ ପ୍ରତିଦିନ ଡୁସ୍ ଦେଇ ଝାଡ଼ା କରାହୁଏ । ଜଣେ କମ୍ପାଉଣ୍ଡର୍ ତାଙ୍କ ସଙ୍ଗରେ ଆସିଥାଏ । ସେ ତାଙ୍କ ପଣ୍ଡାକୁ ତାଙ୍କ ପୁଅ ରୋଗ କଥା କହିବାରୁ ପଣ୍ଡେ ବାପାଙ୍କୁ ଡାକି ଦେଖେଇବା ପାଇଁ କହିଲେ । ସେ ବାପାଙ୍କୁ ଡାକିଲେ । ବାପା ଯାଇ ଦେଖି ଔଷଧ ଦେଲେ । ସାତଦିନ ଭିତରେ ସେ ପିଲାର ମନକୁ ଝାଡ଼ା ହେଲା । ସେ ବଙ୍ଗୀୟ ଭଦ୍ରଲୋକ ବାପାଙ୍କ ଚିକିତ୍ସାରେ ଅତ୍ୟନ୍ତ ପ୍ରୀତ ହୋଇ ଯାହା ଟଙ୍କା ଦେଲେ ତା ଛଡ଼ା ବାପାଙ୍କୁ ସାଥିରେ କଲିକତା ବୁଲାଇବାକୁ ନେଇ ୪/୫ ଦିନ ରଖି ଛାଡ଼ିଲେ ।

ବଡ଼ବାପା କବିରାଜ ଧର୍ମ୍ମ ମହାପାତ୍ର । ଡାକନାମ ଧର୍ମ୍ମବୈଦ୍ୟ । ମତେ ସାତବର୍ଷ ବେଳକୁ ୧୯୩୦ ମସିହାରେ ସେ ଦେହତ୍ୟାଗ କଲେ । ସେ ଆଣ୍ଡୁ

କବିରାଜ ଥିଲେ । ଗୋଟିଏ ଘଟଣା ମନେ ଅଛି ଲେଖୁଛି । ଆମ ହରଚଣ୍ଡୀ ସାହିର ଅଧୁ ମହାପାତ୍ର ଅଫିମ ଖାଆନ୍ତି । ଦିନେ ଅଧିକ ଅଫିମ ଖାଇବାରୁ ତାଙ୍କ ଝାଡ଼ା ବନ୍ଦ ହୋଇ ପେଟ ଫାମ୍ପିଗଲା । ଡାକ୍ତର ଆସି ଡୁସ୍ ଦେଲେ ଡୁସ୍ ପାଣି ପେଟରେ ରହିଗଲା, ଝାଡ଼ା ହେଲାନାହିଁ । ତାଙ୍କ ଘରେ କାନ୍ଦ ବୋବା ପଡ଼ିଗଲା ।

ସେ ଅଧୁ ମହାପାତ୍ର ଆମର ବନ୍ଧୁଘର । କୌଣସି କାରଣରୁ ବଡ଼ବାପାଙ୍କ ସହିତ ତାଙ୍କର ଅପଡ଼ ହୋଇଯାଇଥାଏ । ସେମାନେ ବଡ଼ବାପାଙ୍କୁ ଡ଼ାକୁ ନଥାନ୍ତି । କିନ୍ତୁ ବଡ଼ ବାପା ସବୁ ଖବର ରଖୁଥାନ୍ତି । ଯେତେବେଳେ ଜାଣିଲେ ଝାଡ଼ା ନହୋଇ ଅଧୁ ମହାପାତ୍ର ମରିଯିବେ, ଡାକ୍ତର ଫେରିଗଲେ । ସେ ସଙ୍ଗେ ସଙ୍ଗେ ଚା ଗ୍ଲାସ୍‌ରେ ଗ୍ଲାସେ ଅଦାରସ ନେଇ ତାଙ୍କୁ ନାକଚିପି ପିଆଇଦେଲେ । ସଙ୍ଗେ ସଙ୍ଗେ ଝାଡ଼ା ହୋଇଗଲା, ସେ ଭଲ ହୋଇଗଲେ ।

ଧର୍ମ୍ମବୈଦ୍ୟ କୌଣସି ରୋଗୀଙ୍କୁ ଶତ୍ରୁ ମିତ୍ର ନଭାବି ଚିକିତ୍ସା କରୁଥିଲେ । ସେ ବହୁସମୟ ପୁରୀରେ ରହୁଥିଲେ । ସେତେବେଳେ ପୁରୀରେ ବଡ଼ ବଡ଼ ଓକିଲ ପ୍ରାୟ ସବୁ ବଙ୍ଗାଳି ଥିଲେ । କେବଳ ପୁରୀର ଲୋକନାଥ ମିଶ୍ର ଓଡ଼ିଶା ଓକିଲ ଥିଲେ । ବଡ଼ବାପା ବଙ୍ଗାଳି ବିଦିବାବୁ, ସୁରେନ୍ଦ୍ର ବାବୁ, ଯୋଗୀବାବୁ ଓ ଲୋକନାଥ ମିଶ୍ରଙ୍କର ଚିକିତ୍ସକ ଥିଲେ ବୋଲି ମୋତେ ଭୁବନେଶ୍ୱର ବାର୍‌ରେ ବୟୋଜ୍ୟେଷ୍ଠ ଓକିଲ ୰ କୁଳମଣି ମହାନ୍ତି କହିଥିଲେ । ସେ ବଡ଼ବାପାଙ୍କ ଚିକିତ୍ସା ବିଷୟରେ ବହୁତକଥା କହିଥିଲେ । ବଡ଼ବାପାଙ୍କର ପୁରୀରେ କାମଥିଲେ ସନ୍ଧ୍ୟାବେଳେ ଖାଇ ଟିକିଏ ବିଶ୍ରାମ ନେଇ ରାତି ୯ଟାରେ ଚାଲି ଚାଲି ପୁରୀଯାଇ ଦିନ ୧୦।୧୧ଟାରେ ପହଞ୍ଚି ନରେନ୍ଦ୍ରରେ ଗାଧୋଇ, ମନ୍ଦିରରେ ଅନ୍ନପଖାଳ ଖାଇ କଚେରୀକୁ ଯାଆନ୍ତି । ବର୍ତ୍ତମାନ ଏକଥା ଶୁଣିଲେ କେହି ବିଶ୍ୱାସ କରିବେ ନାହିଁ ।

୧୯୪୦ ମସିହା ବେଳକୁ ଶ୍ରୀଧର ଗରାବଡୁ ଭୁବନେଶ୍ୱରରେ କବିରାଜି କରୁଥିଲେ । ୰ ଶ୍ରୀଧର ଗରାବଡୁ କଟକର ରାଧାରମଣ ପୁସ୍ତକାଳୟର ମାଲିକ ଏବଂ ଭୁବନେଶ୍ୱରର ବିଶିଷ୍ଟ ଲୋକ ୰ ରତ୍ନାକର ଗରାବଡୁଙ୍କ ପୁତ୍ର ଶ୍ରୀଧର ଗରାବଡୁ ମାଟ୍ରିକ୍ ପର୍ଯ୍ୟନ୍ତ କଟକରେ ରହି

ପଢୁଥିଲେ । ପଢ଼ାଛାଡ଼ି ସେ କବିରାଜି କରିବାକୁ ମନକଲେ । ସେତେବେଳେ ବିଶିଷ୍ଟ କବିରାଜ ଏବଂ ପଣ୍ଡିତ ୰ମହେଶ୍ୱର ମହାପାତ୍ର (ତାଙ୍କ କଥା ପୂର୍ବରୁ ଲେଖିଛି) ତାଙ୍କ ଘରେ ରହି ପୋଥିସବୁ କାଗଜରେ ଉତାରୁଥିଲେ । ସେ ମହେଶ୍ୱର ମହାପାତ୍ର ରୋଗୀର ନିଦାନ ଦେଖି ଭଲ ଭଲ କବିରାଜି ଡଉଛ, ଲେହ, ବଟିକା, ପ୍ରଭୃତି କରିପାରନ୍ତି । କିନ୍ତୁ ନିଜେ ଚିକିତ୍ସା କରୁନଥିଲେ । ସେ ଶ୍ରୀଧର ବାବୁଙ୍କୁ କବିରାଜି କରିବାକୁ ଉତ୍ସାହିତ କଲେ । କଟକର ବାଲୁବଜାରର ବିଶିଷ୍ଟ ଡାକ୍ତର ୰କୁଳମଣି ମିଶ୍ର ମଧ ଶ୍ରୀଧର ବାବୁଙ୍କୁ ଇଂଜେକ୍ସନ୍ ଦେବା ଶିଖାଇଦେଲେ । ଶ୍ରୀଧର ବାବୁ ବଡ଼ ବୁଦ୍ଧିମାନ ଥିଲେ । ସେ ଅଳ୍ପଦିନ ମଧ୍ୟରେ କେଉଁ ରୋଗୀକୁ କେଉଁ ଔଷଧ ଦେବାକୁ ହେବ ଶିଖିଗଲେ । ମଝିରେ ମଝିରେ ମହେଶ୍ୱର କବିରାଜ ତାଙ୍କୁ ସାହାଯ୍ୟ କଲେ ।

ଶ୍ରୀଧର ବାବୁ କବିରାଜି, ଏଲୋପାଥି ଏବଂ 'ଡିଚେନ୍' କମ୍ପାନୀର ଔଷଧ ବ୍ୟବହାର କରୁଥିଲେ । ଯେଉଁ ଔଷଧରେ ରୋଗୀ ଚଞ୍ଚଳ ଭଲ ହୋଇପାରିବ ସେ ଔଷଧ ଦେଉଥିଲେ ଏବଂ ନିଜେ ବହୁ ମୂଲ୍ୟବାନ୍ କବିରାଜି ଔଷଧ ଲୋକରଖି ଭ଼ଲଭାବରେ ତିଆରି କରୁଥିଲେ । ମୁଁ ଦେଖିଛି ପ୍ରତିଦିନ ୪।୫ ଜଣ ଲୋ଼କ ତାଙ୍କ ଘରେ କବିରାଜି ଔଷଧ ତିଆରି କରୁଥିଲେ । ଚ୍ୟବନପ୍ରାସ, ଛାଗଳାଦିଘୃତ ବଂ ଭଲ ଭଲ କବିରାଜି ତୈଳ ପ୍ରଭୃତି ନିଜେ ତିଆରି କରୁଥିଲେ । ସେତେବେଳେ ଅଳ୍ପଦିନ ମଧରେ ଭୁବନେଶ୍ୱର ଆଖପାଖ ଗ୍ରାମରେ ଚିକିତ୍ସାରେ ବହୁ ସୁନାମ ଅର୍ଜନ କରିଥିଲେ । ସେ ସବୁପ୍ରକାର ରୋଗ ଚିକିତ୍ସା କରୁଥିଲେ ଏବଂ ଅଳ୍ପ ଦିନରେ ରୋଗ ଭଲ କରିପାରୁଥିଲେ । ତାଙ୍କର ପିଲାମାନେ କବିରାଜି ବା ଡାକ୍ତିର ପଢ଼ିଲେ ନାହିଁ ।

ମୁଁ ନ ଲେଖି ରହିପାରୁନାହିଁ । ଭୁବନେଶ୍ୱରରେ ନିଜକୁ ଜଣେ ପ୍ରତିଷ୍ଠିତ ବ୍ୟକ୍ତି ବୋଲାଉଥିବା ଲୋକ (ମୁଁ ତାଙ୍କ ନାଁ ଜାଣିକରି ଲେଖିପାରୁନାହିଁ) ଶ୍ରୀଧର ବାବୁଙ୍କୁ ଶିକାରକୁ ଡାକି ତାଙ୍କୁ ମଦ ପିଆଇ ତାଙ୍କ ମୁଣ୍ଡ ଖରାପ କରିଦେଲା । ଖାଲି ଶ୍ରୀଧର ବାବୁଙ୍କୁ ନୁହେଁ, ଭୁବନେଶ୍ୱରର ବହୁତ ଯୁବକଙ୍କୁ ତାଙ୍କ ଘରକୁ ଡାକି ଭଲଭଲ ଜିନିଷ ଖାଇବାକୁ ଦେଇ ମଦ ପିଇବାକୁ ଦେଉଥିଲେ । ଭୁବନେଶ୍ୱରର ବିଶିଷ୍ଟ କଣ୍ଟ୍ରାକ୍ଟର ଲିଙ୍ଗରାଜ ମହାରଣାଙ୍କୁ ମଦ ପିଆଇ ନଷ୍ଟ

କରିଦେଲା । ମୋର ବନ୍ଧୁ ହରି ପୂଜାପଣ୍ଡା, ୰ ଘନଶ୍ୟାମ ପଣ୍ଡାଙ୍କୁ ସନ୍ଧ୍ୟାବେଳେ ଖାଇବାକୁ ଡାକି ମଦ ପିଇବାକୁ ଦେଇଥିଲା । କିନ୍ତୁ ମତେ ଯେତେବେଳେ ଡାକେ ମୁଁ ସକାଳବେଳା ତାଙ୍କ ଘରକୁ ଯାଏ ।

ପୂର୍ବରୁ ଭୁବନେଶ୍ୱରରେ କେହି ମଦ ପିଉନଥିଲେ । କେହି କେହି ଗଞ୍ଜେଇ ଖାଇଲେ ଲୁଚାଇକରି ଖାନ୍ତି । କିନ୍ତୁ ବହୁତ ଲୋକ ଭାଙ୍ଗ ଖାଉଥିଲେ ।

ବର୍ତ୍ତମାନ ଯେଉଁ ପୌର ଚିକିତ୍ସାଳୟ ବା ମ୍ୟୁନିସିପାଲଟି ଡାକ୍ତରଖାନା ରହିଛି ସେଇଟା ଜିଲ୍ଲା ବୋର୍ଡ ଅଧିନରେ ଥିଲା । ଜଣେ ସରକାରୀ ଡାକ୍ତର, ଜଣେ କମ୍ପାଉଣ୍ଡର, ଜଣେ ବେହେରା ଓ ଜଣେ ମେହେନ୍ତର ନିଯୁକ୍ତି ପାଇ ଜିଲ୍ଲା ବୋର୍ଡରୁ ଦରମା ପାଉଥିଲେ । ଗୋଟେ ଘରେ ଡାକ୍ତର ରୋଗୀ ଦେଖୁଥିଲେ, ଆଉ ଏକ ଘରେ କମ୍ପାଉଣ୍ଡର ଔଷଧ ବିତରଣ କରୁଥିଲେ । ସେତେବେଳେ ପ୍ରାୟ ଔଷଧ ଡାକ୍ତରଖାନାରୁ ଦିଆଯାଉଥିଲା । କେବେ କେମିତି ସାଂଘାତିକ ବେମାର ପାଇଁ ଦୋକାନରୁ କିଣିବାକୁ ପଡୁଥିଲା । ଦୁଇ ବଖରାରେ ୮ଟି ରୋଗୀଙ୍କ ପାଇଁ 'ବେଡ୍' (ଶଯ୍ୟା) ଥିଲା । ଅପରେସନ୍ ପାଇଁ ମଧ୍ୟ ଗୋଟେ ଘର ଥିଲା । ଡାକ୍ତରଖାନାର କିଛି ଦୂରରେ ଗୋଟେ ଶବବ୍ୟବଚ୍ଛେଦ ଗୃହ ଥିଲା । ଭୁବନେଶ୍ୱର ଥାନା, ପିପିଲି ଥାନା, ନିମାପଡ଼ା ଥାନା ଅଞ୍ଚଳରୁ ଆସୁଥିବା ଅପମୃତ୍ୟୁ ମୃତଦେହ ସେଠାରେ ବ୍ୟବଚ୍ଛେଦ ହେଉଥିଲା । ଡାକ୍ତରଖାନାକୁ ବେଶୀ ରୋଗୀ ଆସୁନଥିଲେ । ଭୁବନେଶ୍ୱରରେ ଯେଉଁ ହାଟ ଅଛି ସେହି ହାଟରେ ହାଟଦିନ କମ୍ପାଉଣ୍ଡର୍‌ବାବୁ ଔଷଧ ବିତରଣ କରୁଥିଲେ ।

ରାମକୃଷ୍ଣ ମିଶନର ବର୍ତ୍ତମାନ ଯେଉଁ ଡାକ୍ତରଖାନା ଅଛି, ସେହି ଡାକ୍ତରଖାନା ଥିଲା । ମୋ ପିଲାଦିନେ ଜୀବନ ମହାରାଜା ଡାକ୍ତରୀ ଔଷଧ ଦେଉଥିଲେ । ଆଉଜଣେ ହୋମିଓପାଥିକ୍ ଔଷଧ ଦେଉଥିଲେ । ଆଖପାଖ ଗ୍ରାମମାନଙ୍କରୁ ବହୁତ ରୋଗୀ ଆସୁଥିଲେ ।

**ଏରୋଡ୍ରମ୍ :-**

ଦ୍ୱିତୀୟ ବିଶ୍ୱଯୁଦ୍ଧ (Second world war) ବେଳେ ପ୍ରାୟ ୧୯୪୧/୪୨ ମସିହା ବେଳକୁ ଭୁବନେଶ୍ୱର ଏରୋଡ୍ରମ୍ ଆରମ୍ଭ ହେଲା । ମୁଁ ସେତେବେଳେ ମାଟ୍ରିକ୍ ପଢୁଥିଲି । ଲିଙ୍ଗରାଜମନ୍ଦିର ପଶ୍ଚିମପଟେ

ରେଳଲାଇନ୍‌ଠାରୁ ଅଳ୍ପଦୂରରେ ଭୁବନେଶ୍ୱର ମଉଜା, ପୋଖରୀପୁଟ ମଉଜା, ଭୀମପୁର ମଉଜାର କିଛିକିଛି ଜମିରେ ଏହା ତିଆରି ହେଲା । ପ୍ରଥମେ ଭୀମପୁର ମଉଜା (ଭୀମପୁର ସଂରକ୍ଷିତ ଜଙ୍ଗଲ) ର ଉତ୍ତରପଟେ (ବର୍ତ୍ତମାନ ୬ନଂ ଇଉନିଟ୍) ବଡ଼ବଡ଼ ଚାଳଘର ମାନ ତିଆରି ହୋଇ ଅଫିସ୍ ହେଲା । ଲୋକେ ଏହାକୁ ''ଏୟାରଫିଲ୍ଡ' ବୋଲି କହିଲେ ।

ଯୁଦ୍ଧକାଳୀନ ଭିତ୍ତିରେ ଏହିକାମ ହେଉଥାଏ । ଆଗେ ପୁନାମାଗେଟ୍‌ଠାରୁ ଏରୋଡ୍ରମ୍ ମଝିରେ ଯାଗମରା ଦେଇ ଖଣ୍ଡଗିରି କରଦେଇ ଖୋର୍ଦ୍ଧାକୁ ରାସ୍ତା ଯାଇଥିଲା । ଏରୋଡ୍ରମ୍ ତିଆରି ହେବାରୁ ପୁନାମାଗେଟ୍‌ଠାରୁ ବର୍ତ୍ତମାନର ରାସ୍ତା ତିଆରି ହୋଇ ଛଅନମ୍ବର ଇଉନିଟ୍ ଦେଇ ଶିରିପୁର, ଶବରସାହି ପାଖ ଦେଇ ପୂର୍ବରାସ୍ତାରେ ଜାଗମରା ପାଖରେ ମିଶିଲା ।

କଲିକତାରୁ ଅଫିସ୍ ଷ୍ଟାଫ୍, ଇଂଜିନିୟର, ଓଭରସିୟର ସବୁ ବଙ୍ଗଳାଲୋକ ଆସିଥାନ୍ତି । ଏରୋଡ୍ରମ୍ ଅଫିସର ଜଣେ ବଙ୍ଗାଳି ଭଦ୍ରଲୋକ ଆସିଥିଲେ । କେତେଜଣ ବଙ୍ଗାଳି ବଡ଼ବଡ଼ ଠିକାଦାର (Contractor) ମଧ୍ୟ କଲିକତାରୁ ଆସିଥିଲେ । ସେମାନେ ସ୍ଥାନୀୟ ପେଟି କଣ୍ଟ୍ରାକ୍ଟର ଲଗାଇ କାମ କଲେ । ଆମର ଏଠାରେ 'ଏ' କ୍ଲାସ୍ କଣ୍ଟ୍ରାକ୍ଟର ମାନଙ୍କୁ ଏରୋଡ୍ରମ୍ କାମ କରିବାକୁ ସୁବିଧା ଦେଉନଥାନ୍ତି ।

ଖୋର୍ଦ୍ଧାନିକଟ ନିଆଳି ଗ୍ରାମର ଆର୍ତ୍ତବନ୍ଧୁ ବ୍ରହ୍ମାଙ୍କ ପୁଅ ଦିବ୍ୟସିଂହ ବ୍ରହ୍ମା ଭୁବନେଶ୍ୱରରେ କଣ୍ଟ୍ରାକ୍ଟର କାମ କରୁଥିଲେ । ସେ 'ଏ' କ୍ଲାସ୍ କଣ୍ଟ୍ରାକ୍ଟର । ସେ ଚେଷ୍ଟା କଲେ ଏରୋଡ୍ରମ୍ କାମ କରିବାପାଇଁ କିନ୍ତୁ ତାଙ୍କୁ କାମ ନ ଦେବାରୁ ସେ ଓଡ଼ିଶାର ପୂର୍ବତନ ବାଚସ୍ପତି ପଣ୍ଡିତ ନୀଳକଣ୍ଠ ଦାସଙ୍କୁ କହିବାରୁ ପଣ୍ଡିତ ମହାଶୟ ଏରୋଡ୍ରମ୍ ଅଫିସରଙ୍କୁ କହିଲେ । ବ୍ରହ୍ମାଙ୍କୁ ଏରୋଡ୍ରମ୍ କାମ ମିଳିଲା । କୁଲିମାନେ ରହିବାପାଇଁ ୧୨୨ ବଖରା ଅସ୍ଥାୟୀ ଚାଳଘର ଦୁଇମାସ ମଧ୍ୟରେ କରିବାକୁ ତାଙ୍କୁ ଅର୍ଡର ହେଲା । ସେତେବେଳେ ଏତେଗୁଡ଼ିଏ ଘର ଦୁଇମାସ ମଧ୍ୟରେ ସବୁଜିନିଷ ଯୋଗାଡ଼ କରି କରିବା କଷ୍ଟକର । କିନ୍ତୁ ଦିବ୍ୟସିଂହ ବ୍ରହ୍ମା ସାହାସ କରି ଏହି କାମ ଆରମ୍ଭ କଲେ ।

ଦିବ୍ୟସିଂହଙ୍କ ମାମୁଁ ନୟାଗଡ଼ ଡାକ୍ତରଖାନାରେ ସର୍ଜନ ଥାଆନ୍ତି ।

ତାଙ୍କର ନୟାଗଡ଼ ଇଲାକାରେ ଭଲ ସୁନାମ ଥାଏ । ସେ ସାହାଯ୍ୟ କଲେ । ଦଶପଲ୍ଲାର ମହୀପୁର ଇଲାକାର ବହୁ ଡମଜାତୀୟ ଲୋକ ଅଛନ୍ତି । ସେମାନେ ବାଉଁଶ ତାଟି ବୁଣନ୍ତି । ସେମାନେ ଆଖପାଖ ଗ୍ରାମମାନଙ୍କରୁ ତାଙ୍କର ଭାଇବନ୍ଧୁମାନଙ୍କୁ ଡାକି ବ୍ରହ୍ମାଙ୍କର ଯାହା ବାଉଁଶ ତାଟି ଦରକାର ଥିଲା ବୁଣି ଦେଇ ଦେଲେ । ୨୦ ଦିନ ମଧ୍ୟରେ ୨୦।୨୫ ଖଣ୍ଡ ଶଗଡ଼ରେ ବାଉଁଶ ତାଟି ଧରି ଭୁବନେଶ୍ୱରରେ ପହଞ୍ଚିଗଲେ । ନିର୍ଧାର୍ଯ୍ୟ ସମୟ ପୂର୍ବରୁ ୧୨୨ ବଖରାଘର କୁଲିମାନଙ୍କ ପାଇଁ ତିଆରି କରିଦେଲେ ।

ଇଂଜିନିୟରମାନେ ଭାବିଥିଲେ ବ୍ରହ୍ମା ଏହି କାର୍ଯ୍ୟ ଠିକ୍ ସମୟ ମଧ୍ୟରେ କରିଦେଇ ପାରିବେ ନାହିଁ କିଛି ଉପାୟ ନପାଇ ଇଂଜିନିୟରମାନେ ତାଙ୍କୁ ତାଙ୍କର ପ୍ରାପ୍ୟ ଟଙ୍କା ଦେବାରେ ହଇରାଣ କଲେ । ପୂର୍ବରୁ ଯେଉଁମାନେ ଏରୋଡ୍ରମ୍‌ରେ ପେଟି କଣ୍ଟ୍ରାକ୍ଟର ଭାବେ କାମ କରୁଥିଲେ ସେମାନଙ୍କୁ ଏ ବଙ୍ଗୀୟ ଇଂଜିନିୟର, ଓଭରସିୟର, କଣ୍ଟ୍ରାକ୍ଟର ମାନଙ୍କ ପ୍ରତି ବଡ଼ ଖରାପ ବ୍ୟବହାର କରୁଥିଲେ । ସେମାନେ ଅସନ୍ତୁଷ୍ଟ ଥିଲେ । ତେଣୁ ଭୁବନେଶ୍ୱର, ସୁନ୍ଦରପଦା, ଜାଗମରାର ବିଶିଷ୍ଟ ଲୋକମାନେ ଏବଂ ଖୋର୍ଦ୍ଧା ନିକଟସ୍ଥ ତାପଙ୍ଗ ଦଳବେହେରା ଆସି ଏରୋଡ୍ରମ୍ ଅଫିସରଙ୍କୁ ଦେଖା କରି ସବୁ ବିଷୟ କହିଲେ । ବ୍ରହ୍ମା ତାଙ୍କ ପ୍ରାପ୍ୟ ଟଙ୍କା ପାଇଲେ । ଠିକାଦାରମାନେ ରାୟପୁର, ଛତିଶଗଡ଼ ଆଡୁ ଲୋକଆଣି ଦିନରାତି ଲାଗି ଏରୋଡ୍ରମ୍ ଚାରିପଟେ ତାର ବାଡ଼, ରନ୍‌ୱେ, ଅଫିସଘର, ଅଫିସରମାନଙ୍କ ରହିବାଘର ଅଳ୍ପଦିନ ମଧ୍ୟରେ ତିଆରି କରିଦେଲେ । ପୋଖରୀପୁଟ, ଡୁମୁଡୁମା, ଯଦୁପୁର ଟାଙ୍ଗିରେ ଡ଼ମ୍ପରମାନ ତିଆରି ହେଲା । (ଏହି ଡ଼ମ୍ପର ହେଉଛି ତିନିପଟର ୫୦ ଫୁଟ୍ ଚଉଡ଼ାର ଅର୍ଦ୍ଧଚନ୍ଦ୍ର ଆକାରରେ ୮।୧୦ ଫୁଟ୍ ଉଚ୍ଚର ମାଟିବାଡ଼) ଏହାଛଡ଼ା ବଡ଼ବଡ଼ ପଥରରେ ଖୁଣ୍ଟ ମାନ ତିଆରି ହେଲା । ଯାହା ଉପରେ ଠିଆହୋଇ ବହୁଦୂର ପର୍ଯ୍ୟନ୍ତ ବାହ୍ୟଶତ୍ରୁମାନଙ୍କୁ ଦୂରବୀକ୍ଷଣ ଯନ୍ତ୍ର ମାଧ୍ୟମରେ ଦେଖିହେବ । ଏହି ଏରୋଡ୍ରମ୍ କାମରେ ବହୁ ଟ୍ରକ୍ କାମ କରୁଥିଲା । ଭୁବନେଶ୍ୱରର ୰ ମଧୁସୂଦନ ଗରାବଡୁ, ୰ ଅଭିରାମ ମହାପାତ୍ର ପରେ ଅଫିସରେ କିରାଣି ରୂପେ ନିଯୁକ୍ତି ପାଇଥିଲେ ।

## ଦ୍ୱିତୀୟ ମହାଯୁଦ୍ଧବେଳେ ଭୁବନେଶ୍ୱର ଓ ଆମର ଭୂମିକା :-

ଯୁଦ୍ଧ ଘମାଘୋଟ ଲାଗିଥାଏ । ଜାପାନ ସୈନ୍ୟ ରେଙ୍ଗୁନ ଦେଇ ଆସାମ ସୀମାପର୍ଯ୍ୟନ୍ତ ମାଡ଼ି ଆସିଥିଲେ । କଲିକତାରେ ବୋମା ପଡ଼ିଲା । ଓଡ଼ିଶାରେ ସମସ୍ତେ ଆତଙ୍କିତ ହୋଇପଡ଼ିଲେ । କଟକରୁ ସବୁ ବଡ଼ ବଡ଼ ଅଫିସ ସମ୍ବଲପୁର ଗଲା । କଟକରୁ ଅନେକ ଲୋକ ତାଙ୍କ ବନ୍ଧୁବାନ୍ଧବ ଘରକୁ ଏବଂ ଭୁବନେଶ୍ୱର ଆସିଲେ । ଆମେ ଯୁବକମାନେ, ୰ ବ୍ରଜମଣି ପୂଜାପଣ୍ଡା, ମୁଁ, ୰ ବୃନ୍ଦାବନ ମହାପାତ୍ର, ହରି ପୂଜାପଣ୍ଡା, ୰ ଶରତ ମହାପାତ୍ର, ବୃନ୍ଦାବନ ଚନ୍ଦ୍ର ମହାପାତ୍ର, ନରହରି ଦାଶ, ଗନ୍ଧର୍ବ ଶତପଥି, ୰ ଅଭିରାମ ମହାପାତ୍ର, ପ୍ରଭୃତି କଟକ ରାଧାରମଣ ପୁସ୍ତକାଳୟ ପ୍ରେସ୍ ମାଲିକ ୰ ଲକ୍ଷ୍ମୀଧର ଗରାବଡୁଙ୍କ ବଡ଼ପୁଅ ମୋର ବନ୍ଧୁ । ବର୍ତ୍ତମାନ ସେ ଓଡ଼ିଶା ବିଶିଷ୍ଟ ଇଲେକ୍ଟ୍ରିକ୍ ଇଂଜିନିୟର ତ୍ରିଲୋଚନ ତାଙ୍କ ବଂଶ କଟକ ଛାଡ଼ି ଭୁବନେଶ୍ୱରରେ ତାଙ୍କ ଘରେ ଆସି ରହିଲେ । ଆମେ ଖରା ଛୁଟିରେ ଆସି ଘରେ ଥାଉ । ଆମକୁ ଥାନା ଅଫିସର କହିଲେ ରାତିରେ ସାହିରେ ବୁଲି ଜଗିବାକୁ । ଆମେ ଖାଇସାରି ରାତି ଦଶଟାରୁ ଭୋର ପର୍ଯ୍ୟନ୍ତ ଟର୍ଚ୍ଚ ଲାଇଟ୍ ଓ ବାଡ଼ି ଧରି ସାହିରେ ବୁଲି ଦେଖିଲୁ । ଭାରି ଖୁସିଲାଗୁଥାଏ । ମୋର ଗୋଟେ କଥା ମନେ ପଡୁଛି । ତ୍ରିଲୋଚନଙ୍କ ବଡ଼ବାପା ପଣ୍ଡିତ ରତ୍ନାକର ଗରାବଡୁ ତ୍ରିଲୋଚନକୁ କହିଲେ ତୁ ଖାଲି ବୁଲୁଛୁ କାହିଁକି ? ପ୍ରତିଦିନ ଅଭ୍ୟାସ କରି ୧୦୦ ପୃଷ୍ଠା ଯାହା ଭଲ ଲାଗୁଛି ପଢ଼ । ତ୍ରିଲୋଚନ ମତେ ସେହି କଥା କହିଲେ । ମୋର ସେହି କଥା ମନକୁ ପାଇଲା । ଆଜି ପର୍ଯ୍ୟନ୍ତ ସେ ଅଭ୍ୟାସ ରଖିଛି । ମନେ ରହୁକି ନରହୁ ପଢ଼େ । ଏହି ସମୟରେ ଲୋକମାନେ ବଡ଼ ଆତଙ୍କିତ ଅବସ୍ଥାରେ ଥାନ୍ତି । ଭୁବନେଶ୍ୱରକୁ କେତେ ଖଣ୍ଡ ଦୈନିକ 'ସମାଜ' ଆସୁଥାଏ । ଲୋକମାନେ ଦଳ ଦଳ ହୋଇ ବସି ଖବର କାଗଜ ପଢ଼ି ଯୁଦ୍ଧକଥା ଆଲୋଚନା କରୁଥିଲେ । ବହୁ ଗୁଜବ ଶୁଣା ଯାଉଥାଏ । କେହି କେହି ରେଡ଼ିଓରୁ ଖବର ଶୁଣି କହୁଥାନ୍ତି । ଲୋକମାନେ ବହୁତ ଭୟଭୀତ ଅବସ୍ଥାରେ ଥାନ୍ତି । ଅନେକ ଖୁସି ହେଉଥିଲେ ସୁବାଷ ବୋଷ 'ଆଜାଦ ହିନ୍ଦ ଫଉଜ' ଧରି ଜାପାନ ସୈନ୍ୟଙ୍କ ସାହାଯ୍ୟରେ ଅଳ୍ପ ଦିନରେ ଦିଲ୍ଲୀ ଦଖଲ କରି ବ୍ରିଟିଶ ମାନଙ୍କୁ ତଡ଼ି ଭାରତକୁ ସ୍ୱାଧୀନ କରି ଦେବେ । ସେତେବେଳେ

ସବୁ ନେତା (କଂଗ୍ରେସ, କମ୍ୟୁନିଷ୍ଟ) ଜେଲ୍‌ରେ ଥାନ୍ତି ।

ଏହି ସମୟରେ ଗୋଟେ କଥା ମନେ ପଡୁଛି ନଲେଖି ରହିପାରୁନାହିଁ । ଅନେକ ଯେଉଁମାନେ ରେଙ୍ଗୁନ୍‌ରୁ ପଳାଇ ଆସିଥାନ୍ତି ତାଙ୍କୁ 'ଏଭାକିୟୁ' ବୋଲି କହୁଥିଲେ । ଅନେକ ଏଭାକିୟୁ ବଙ୍ଗାଳି ତାଙ୍କର ପରିବାର ନେଇ ଭୁବନେଶ୍ୱରରେ ରହୁଥିଲେ । ଲେଖିବାକୁ ବାଧ ହେଉଛି । କେତେକ ବଙ୍ଗାଳି ଅତି ହୀନ ଦୃଷ୍ଟିରେ ଓଡ଼ିଆଙ୍କୁ ଦେଖନ୍ତି ଏବଂ ସେହିପରି ବ୍ୟବହାର କରନ୍ତି । ଯାହାଦ୍ୱାରା ଆମେ ଯୁବକମାନେ ତାଙ୍କ ପ୍ରତି ସେହିପରି ବ୍ୟବହାର କରିବାକୁ ବାଧ ହେଉଥିଲୁ । ଗୋଟେ କଥା ଲେଖୁଛି - ଅବସରପ୍ରାପ୍ତ ଜିଲ୍ଲା ଜର୍ଜ ୰ ସାଧୁଚରଣ ମହାନ୍ତିଙ୍କ ନେତୃତ୍ୱରେ ଗୋଟିଏ କମିଟି ଗଢ଼ି କେଦାରଗୌରୀ ମନ୍ଦିର ବେଢ଼ା ପୋଖରୀର ବହୁତ ଉନ୍ନତିମୂଳକ କାର୍ଯ୍ୟ କରୁଥିଲୁ । ଏହି ସମୟରେ ଜଣେ ଏଭାକ୍ୟୁ ବଙ୍ଗାଳି ପ୍ରଫେସର କେଦାରଗୌରୀ ନିକଟରେ ଘର ଭଡ଼ାନେଇ ପିଲା ପିଲି ଧରି ରହୁଥିଲେ । ତାଙ୍କର ଦୁଇଗୋଟି ପ୍ରାପ୍ତ ବୟସ୍କା ଝିଅ ଏବଂ ତାଙ୍କ ସ୍ତ୍ରୀ ପ୍ରତିଦିନ କେଦାରଗୌରୀ କୁଣ୍ଡରେ ସବୁଦିନ ସ୍ନାନ କରିବାକୁଯାନ୍ତି । ସେ ସ୍ନାନ କଲାବେଳେ ଅନ୍ୟ ଓଡ଼ିଆ ସ୍ତ୍ରୀଲୋକମାନେ ଯେଉଁମାନେ ସ୍ନାନ କରୁଥାନ୍ତି ତାଙ୍କ ପ୍ରତି ଖରାପ ବ୍ୟବହାର କରନ୍ତି । ସେହି ସମୟରେ କଟକର ବିଶିଷ୍ଟ ଓକିଲ ବାଞ୍ଛାନିଧି ମହାପାତ୍ର ଖରାଦିନ ଛୁଟିରେ ଆସି ଭୁବନେଶ୍ୱରରେ ରହୁଥିଲେ । ବାଞ୍ଛାନିଧିଙ୍କ ସ୍ତ୍ରୀ ପ୍ରତିଦିନ କେଦାରଗୌରୀ କୁଣ୍ଡରେ ସ୍ନାନକରିବାକୁ ଆସନ୍ତି । ସେ ଝିଅ ଦୁଇଟିଙ୍କ ବ୍ୟବହାରରେ ଅତିଷ୍ଠ ହୋଇ ଆମକୁ କହିଲେ । ଏହାଛଡ଼ା ଅନ୍ୟ ସ୍ତ୍ରୀ ଲୋକମାନେ ସେ ଝିଅ ଦୁଇଟି ଗାଧୋଇଲା ବେଳେ ଗାଧଉ ଥିଲେ, ସେମାନେ କହିଲେ, ଏହି ଝିଅ ଦୁଇଜଣ ଗୌରୀ କୁଣ୍ଡ ପାଖରେ ଥିବା ଗାଧୁଆ ଘରେ ଲୁଗା ନପାଲଟି ଗୌରୀଙ୍କ ମୁଖଶାଳାରେ ଯାଇ ଲୁଗା ପାଲଟନ୍ତି । ଏକଥା ଆମକୁ ପଣ୍ଡାମାନେ ଓ ସମସ୍ତେ କହିଲେ । ସେ ଲୁଗାପାଲଟିବା ବେଳେ ୰ ବ୍ରଜମଣି ପୂଜାପଣ୍ଡା ଏବଂ ଆଉ ଜଣେ ସାଙ୍ଗ ସେ ମୁଖଶାଳାରେ ବସିଲେ । ତେଣୁ ସେ ଲୁଗା ପାଲଟି ପାରିଲେ ନାହିଁ । ସେ ଝିଅମାନେ ତାଙ୍କ ବାପାଙ୍କୁ ଆମ ବିରୁଦ୍ଧରେ କହିଲେ । ସେ ଝିଅଙ୍କ ବାପା ପ୍ରଫେସର, ତାଙ୍କ ପଣ୍ଡାଙ୍କୁ

ଡାକି ଆମମାନଙ୍କ ବିରୁଦ୍ଧରେ ନାନା କଥା କହିଲେ । ତାଙ୍କର ପଣ୍ଡା କେଦାରଗୌରୀଙ୍କର ମୁଖ୍ୟ ସେବକ ୰ବାଇଧର ସାମନ୍ତରା । ସେ ବି ଜଣେ ଭୁବନେଶ୍ୱରର ବିଶିଷ୍ଟ ସମାଜସେବୀ । ଆମ ବିରୁଦ୍ଧରେ ସେ ସାଧୁବାବୁଙ୍କୁ କହିଲେ। ସାଧୁବାବୁ ସହଜରେ ଦୁଇପଟୁ ନଶୁଣି ରାୟଦେବା ଲୋକ ନୁହନ୍ତି । ସେ ବାଇଧର ସାମନ୍ତରାୟଙ୍କୁ କହିଲେ ଆଜି ସନ୍ଧ୍ୟା ୭ଟାରେ ଆପଣ ସେ ବଙ୍ଗୀୟ ପ୍ରଫେସର ଙ୍କ ସହିତ ଗୌରୀ ମନ୍ଦିରକୁ ଆସନ୍ତୁ । ମୁଁ ପିଲାମାନଙ୍କୁ ଡକାଉଛି । ସମସ୍ତେ ବସି କଥାଟା ବୁଝିବା । ମତେ ସେହି ଦିନ ୪ଟାରେ ତାଙ୍କ ପିଅନ ହାତରେ ସାଧୁବାବୁ ଡକାଇ ସବୁ ବିଷୟ ଶୁଣିଲେ ଏବଂ ରାତି ୭ଟାରେ ସବୁ ସାଙ୍ଗମାନଙ୍କୁ କେଦାରଗୌରୀ ଡାକିବାକୁ କହିଲେ । ମୁଁ ଗଙ୍ଗାଧର ମହାପାତ୍ରଙ୍କ ସ୍ତ୍ରୀଙ୍କୁ ଖବର ଦେଲି । ସେ ତାଙ୍କର କେତେଜଣ ସାଙ୍ଗଙ୍କୁ ଧରି ଆସିଲେ ଏବଂ ସେ ଝିଅପିଲାଙ୍କ ବ୍ୟବହାର ବିଷୟରେ ସବୁ ବର୍ଣ୍ଣନା କଲେ । ଆମକୁ କିଛି କହିବାକୁ ପଡ଼ିଲା ନାହିଁ । ସାଧୁବାବୁ କହିଲେ ମୁଁ ଏ ପିଲାମାନଙ୍କୁ ଭଲଭାବରେ ଜାଣିଛି । ଏମାନେ ଶିକ୍ଷିତ ଏବଂ ଭଦ୍ର । ବାଇଧର ସାମନ୍ତରାୟ ଏ ପିଲାମାନଙ୍କୁ ଭଲଭାବରେ ଜାଣନ୍ତି । ମୁଁ ବାଇଧର ବାବୁଙ୍କ ଠାରୁ ଶୁଣି ବିଶ୍ୱାସ କରିପାରିଲି ନାହିଁ । ଶେଷରେ ସେ ବଙ୍ଗୀୟ ପ୍ରଫେସର ବଡ଼ ଲଜ୍ଜିତ ହେଲେ ଏବଂ ଭୁଲ ମାଗିଲେ । ଏମିତି ଅନେକ ଘଟଣା ଘଟିଛି ସବୁ ମନେ ପଡୁନାହିଁ, ତେଣୁ ଲେଖିପାରୁନାହିଁ ।

**ଚାଷ ଏବଂ ଖାଦ୍ୟପେୟ :-**

ସବୁ ବିଷୟ ଲେଖି ଚାଷ ବିଷୟରେ ନଲେଖିଲେ ବିଷୟ ପୁରା ହେବ ନାହିଁ । ରାଜଧାନୀ ହେବା ପୂର୍ବରୁ କୃଷି କଲେଜ ଠାରୁ ଆରମ୍ଭ କରି ବିନ୍ଦୁସାଗର ପଶ୍ଚିମ ପଟ ଜମି ଏବଂ କେଦାରଗୌରୀ ତଳ (ବର୍ତ୍ତମାନର ରାଜାରାଣୀ ମଉଜାର) ସବୁ ଜମି ବଡ଼ ଉର୍ବର । ଏହି ଜମିର ଧୋଇ ମରୁଡି ହୁଏ ନାହିଁ । ଏହି ଜମିରେ ପ୍ରଚୁର ପରିମାଣର ସରୁଧାନ ଫଳୁଥିଲା । ଭୁବନେଶ୍ୱରର ସବୁ ସମ୍ପ୍ରଦାୟର ଲୋକ ହାତ ଚାଷ କରୁଥିଲେ । ଯାହାଙ୍କର ଜମି ଥିଲା ଏହି ବିଲରେ ପଦ୍ମକେଶରୀ ସବୁ ଚିନାମାଳି, ବାସୁମତୀ ପ୍ରଭୃତି ସରୁ ଧାନ ଚାଷ ହେଉଥିଲା । ଅଳ୍ପ ଲୋକ ଭାଗ ଦେଉଥିଲେ । ପ୍ରାୟ ସବୁ ଚାଷୀଙ୍କର ଶଗଡ଼, ଲଙ୍ଗଳ ଥିଲା ।

ଚାଷୀମାନେ ପ୍ରଚୁର ଧାନ ପାଉଥିଲେ । ଭୁବନେଶ୍ୱର ରାଜଧାନୀ ହେବାପରେ ଏହି ବିଲମାନଙ୍କରେ ମଇଳା ପାଣି ପଶିଲା, ଧାନ ହେଲାନାହିଁ । ଚାଷୀମାନେ ଚାଷ ଭାଙ୍ଗିଦେଲେ । ବର୍ତ୍ତମାନ ଏହି ବିଲ ବଣସାରୁରେ ପୂର୍ଣ୍ଣ । ଗଙ୍ଗୁଆ ନଦୀର ଦୁଇପଟ ବିଲସବୁ, ବଡ଼ଗଡ଼ ଗହିରରୁ ଆରମ୍ଭ କରି କପିଳେଶ୍ୱର ଗହିର ବା ପଟିଆ ଠାରୁ ଆରମ୍ଭ କରି ଗଙ୍ଗୁଆ ନଦୀର ଶେଷ ପର୍ଯ୍ୟନ୍ତ ସମସ୍ତ ବିଲ ଗଙ୍ଗୁଆ ନଦୀ ବଢ଼ିରେ ଧୋଇ ଯାଉଥିଲା । କିନ୍ତୁ ଶୀତଦିନେ ବହୁତ ମୁଗ, ବିରି ଚାଷ ହେଉଥିଲା । ଦୟାନଦୀର ପଶ୍ଚିମପଟ ଗହିରରେ ଆଖୁ ଚାଷ ହେଉଥିଲା । ଜଇପୁର ଗୁଡ଼ର ଚାହିଦା ବହୁତ ଥିଲା । (ଜଇପୁର ଦୟାନଦୀ ପଶ୍ଚିମପଟେ ଥିବା ଗୋଟେ ଗାଁ) ଜୟପୁର ଗୁଡ଼, ଚିନି ଦାନାଠାରୁ ବଡ଼ ବଡ଼ ଦାନା । ଏହି ଗୁଡ଼ ବଣାକୁ ନିଗାଡ଼ି ଦେଲେ ସିରା ବାହାରିଯାଏ ଏବଂ ନବାତପରି ଗୋଟା ହୋଇ ବାହାରେ । ଲୋକେ ନବାତ ପରି ବ୍ୟବହାର କରନ୍ତି ।

ଲକ୍ଷ୍ମୀସାଗର ଗାଁରେ ବହୁତ ପାନବରଜ ଥିଲା । ଏହି ପାନ ଖାଇବାକୁ ସୁସ୍ୱାଦୁ ହୋଇଥିବାରୁ ଏହାର ଚାହିଦା ବହୁତ ଥିଲା । କଟକ ଆଡୁ ବେପାରୀମାନେ ଏହି ପାନ ନେଇ ଯାଉଥିଲେ । ହାଟରେ ଏହି ପାନ ବେଶୀ ବିକ୍ରୟ ହୁଏ ।

କେଶୁରା, ବାଙ୍କୁଆଳର ବାଇଗଣ ଲୋକମାନଙ୍କର ବହୁତ ଚାହିଦା ଥିଲା । ଭୁବନେଶ୍ୱର ହାଟରେ ଏହି ବାଇଗଣ ଆଗ ବିକ୍ରୟ ହୋଇଯାଏ । ଏହି ଗାଁ ମାନଙ୍କରୁ ବହୁତ କଞ୍ଚାକଦଳୀ ହାଟକୁ ବିକ୍ରୟ ପାଇଁ ଆସେ । ବର୍ତ୍ତମାନ ଏହିସବୁ କଦଳୀ, ବାଇଗଣ କିଆରି ଇଟାଭାଟି ହୋଇଗଲାଣି ।

ବର୍ଷାଦିନେ ନୂଆପଲ୍ଲି, ସିରିପୁର, ମଳିପଡ଼ା, ଅନ୍ଧାରୁଆ ପ୍ରଭୃତି ଗାଁମାନଙ୍କରେ ବହୁତ ବାଇଗଣ, ଭେଣ୍ଡି, ଜହ୍ନି, କାକୁଡି, ଛଚିନ୍ଦ୍ରା ପ୍ରଭୃତି ଭୁବନେଶ୍ୱର ହାଟକୁ ବିକ୍ରୟ ପାଇଁ ଶଗଡ଼ ଶଗଡ଼ ଆସୁଥିଲା । ବାଇଗଣ ବିଶା ପଇସେ (ପୁରୁଣା ପଇସା ନୂଆ ୫/୬ ପଇସା) ବିଶାଟା ୨ କିଲୋ ହେବ ।

ବର୍ଷାଦିନେ ଭୁବନେଶ୍ୱରରେ ବହୁତ କାଙ୍କଡ଼, ମଟକା ବିକ୍ରୟ ହବାକୁ ଆସେ । ମଟକା ଲୋପ ପାଇଗଲା । ଏହା ଦେଖିବାକୁ କୁନ୍ଦୁରି ପରି । ଭାଜିକରି ଖାଇବାକୁ ଭାରି ଭଲ ଲାଗେ ।

ଭୁବନେଶ୍ୱର ହାଟରେ ସରକନ୍ତରା, କପିଳେଶ୍ୱର ଏବଂ କପାଳୀ ମନ୍ଦିର ପଛପଟ ବିଲ ସାରୁ ମିଳେ । ଏହି ସାରୁ ଅଳ୍ପ ସିଝାଇ ଦେଲେ ସିଝି ଯାଏ ଏବଂ ଖାଇବାକୁ ଭଲ ଲାଗେ । ଏହି ସାରୁ ଡାଲମା, ତରକାରି, ଭଜା କରି ଖାଆନ୍ତି । କେହି କେହି ତେନ୍ତୁଳି ଦେଇ ଖଟା କରି ଖାଆନ୍ତି । ସାଧାରଣରେ ଲୋକମାନେ ଭାତ, ଡାଲମା, ଭଜା, ସାଗ ଖାଆନ୍ତି । ସାଗ ଖଡ଼ା କେହି କିଣନ୍ତି ନାହିଁ । ବାଡ଼ି ଘର ମାନଙ୍କରେ କରିଥାନ୍ତି । ସାହିମାନଙ୍କୁ ବିଲମାଛ, କେରାଣ୍ଡି, ମହୁରାଡ଼ି, ତୋଡ଼ି ଓ କଉ ପ୍ରଭୃତି ମାଛ ଅଳ୍ପ ପଇସାରେ ବିକ୍ରୟ ଆସେ । ନଦୀ ବଢ଼ିପରେ ଭଲ ଭଲ ନଈମାଛ,ରୋହି, ଭାକୁର, ମିରିକାଳି, ବାଲିଆ, ବଡ଼ ବଡ଼ ଚୁଙ୍ଗୁଡ଼ି ମାଛ ବିକ୍ରୟ ଆସୁଥିଲା । ଯଦୁପୁର ମୁସଲମାନ ଭଲ ଖାସି ମାଂସ ଛଅଣା ପଇସା ବା ଆଠଣା (ନୂଆ ୩୦ ପଇସା, ୫୦ ପଇସା) ରେ କଟିକି ସେର / (ଦେଢ଼ କିଲୋ) ହେବ ବିକ୍ରୟ କରନ୍ତି । କେବେ କେବେ ସାହିର ଯୁବକ ମାନେ ଛେଳି କିଣି ଆଣି ତା ମାଂସ ଭାଗ ବସାଇ ବିକ୍ରୟ କରନ୍ତି । କେତେବେଳେ କେମିତି ସବର ମାନେ ଖୁରଙ୍ଗ ମାରି ରାତି ଆଠଟା/ନଅଟା ବେଳେ ଅଖାରେ ପୁରାଇ ଆଣନ୍ତି । (ଖୁରୁଙ୍ଗ ଲୋପ ପାଇ ଗଲେଣି ଦେଖିବାକୁ ବଡ଼ ବଡ଼ ଛେଳିପରି । ତା ମାଂସ ଭାରି ସ୍ୱାଦ) ସାହିରେ ଭାଗ ବସାଇ ତା ମାଂସ ନିଅନ୍ତି ।

ଆଜିକାଲି ପରି ବାହାର ମାଛ ଆନ୍ଧ୍ର କିମ୍ବା ନୟାଗଡ଼ ଆଡୁ ମାଛ ଆସୁନଥିଲା । ଥିଲାବାଲା ଲୋକମାନେ ଭୋଜି କଲେ ବେହେରା (କେଉଟ)ଙ୍କୁ ପଠାଇ ମଫସଲ ପୋଖରୀ ମାନଙ୍କରୁ ମାଛ ମାରି କିଣିକରି ଆଣନ୍ତି । ଦୁଧ, ଦହି, ଘିଅ ବଡ଼ ଶସ୍ତାରେ ମିଳୁଥିଲା ।

**ଯାନ ବାହନ :-**

ଆମ ପିଲାଦିନେ ଭୁବନେଶ୍ୱରରେ ବହୁତ ଲୋକ ହାତରେ ଚାଷକରୁଥିଲେ । ପ୍ରାୟ ସମସ୍ତଙ୍କର ଶଗଡ଼ ଥିଲା । ଶଗଡ଼ରେ ବିଲରୁ ଧାନ, ନଡ଼ା ଆଣନ୍ତି ଏବଂ ଶଗଡ଼ରେ ଓଦର ଲଦି ଖତ ନେଇ ବିଲରେ ପକାନ୍ତି । ଆମର ଦୁଇଟା କାଠ ଦଣ୍ଡା ଲୁହାଅଖ ଶଗଡ଼ ଥିଲା । ଚାରି ହଳ ବଡ଼ ବଡ଼ ବଳଦ ଥିଲେ । ମୁଁ ଦେଖିଛି ଶଗଡ଼ରେ ପୁରା ଶଗଡ଼େ ଧାନ ବା ନଡ଼ା ଲଦି

ଦେଇ ବଳଦ ଯୋଚିଲାବେଳେ ବଳଦ ହଳକ ତାଙ୍କ ସିଙ୍ଗ ଲଗେଇ ବୋଝେଇ ଶଗଡ଼ ଟେକି ତାଙ୍କ କାନ୍ଧରେ ରଖି ଦିଅନ୍ତି । ନାରଣ ପ୍ରଧାନ, ମଦନ ବେହେରା ଦୁଇଜଣ ଲୋକ ଏବଂ ଆଉ ଦୁଇଜଣ ଲୋକ (ତାଙ୍କ ନା ମନେ ପଡୁନାହିଁ) ଚାଷ କାମ କରନ୍ତି ।

ଲୋକମାନେ ଶଗଡ଼ରେ ତାଳତାଟି ବାନ୍ଧି ଖଣ୍ଡଗିରି ଏବଂ ଅନ୍ୟାନ୍ୟ ଯାତ୍ରା ଦେଖିବାକୁ ଏବଂ ଦୂର ଦୂରାନ୍ତ ବନ୍ଧୁ ଘରକୁ ଯାଉଥିଲେ । ଆମର ଟିଣ ସିଟ୍ ତଳେ ଅଖାଦେଇ ଗୋଟେ ମଜଭୁତିଆ ତାଟ ଥିଲା । ମୁଁ ଅନେକ ଥର ମୋର ନିମାପଡ଼ା ପାଖ ବିଶ୍ୱାଳ ସାହି, ବାଲିପାଟଣା ପାଖ ବାଗଲପୁର ମୋର ପିଇସୀ ନାନୀ ଘରକୁ ଯାଇଛି । କେତେଥର ଆମ ନନା, ବୋଉ, ଭାଉଜ ମାନେ ଦୁଇଗୋଟି ଶଗଡ଼ରେ ତ୍ରିବେଣୀ ଯାତ୍ରା, ଜୟଦେବଙ୍କ ଜନ୍ମସ୍ଥାନ କେନ୍ଦୁଲି ନିକଟରେ ପ୍ରତିବର୍ଷ ମାଘମାସରେ (ଇଂରେଜିମାସ ଜାନୁଆରୀ ବା ଫେବୃୟାରୀ ମାସରେ) ପ୍ରାଚୀନଦୀ କୂଳରେ ଏହି ଯାତ୍ରା ହୁଏ । ଆମେ ଯାଇ ପ୍ରାଚୀ ନଦୀରେ ବୁଡ଼ ପକାଇ ଯାତ୍ରା ଦେଖି ଘରକୁ ଆସୁ । ଏହିଠାରେ ପ୍ରାଚୀନଦୀ କୂଳରେ ଗୋଟେ ମନ୍ଦିର ମଠ ଥିବାର ମନେ ପଡୁଛି । ମନ୍ଦିରରେ କେଉଁ ଠାକୁର ଅଛନ୍ତି ତା ଅବଶ୍ୟ ମନେ ନାହିଁ ।

ମୁଁ ପ୍ରାୟ ୬।୭ ବର୍ଷର ହୋଇଥିଲି ଭୁବନେଶ୍ୱରରୁ ପ୍ରାୟ କୋଡ଼ିଏ ଖଣ୍ଡ ଶଗଡ଼ରେ କୋଣାର୍କ ନିକଟ ଚନ୍ଦ୍ରଭାଗା ତୀର୍ଥରେ ମାଘ ସପ୍ତମୀ ଦିନ ମାଘବୁଡ଼ ପକାଇବାକୁ ଯାଉଥିଲେ । ଏହି ବୁଡ଼ ପ୍ରାୟ ଜାନୁଆରୀ ବା ଫେବୃୟାରୀ ମାସରେ ପଡ଼ିଥାଏ । ଗଲାବେଳେ ବାଟରେ ଆମ୍ବତୋଟାରେ ପାଣି ସୁବିଧା ଥିବା ଜାଗାରେ ଶଗଡ଼ ରୁହେ । ରୋଷେଇ ହୁଏ । ୰ ନେତ୍ରାନନ୍ଦ ପଣ୍ଡାଙ୍କର ଗୋଟେ ଫନେଲ ବାଲା ଗ୍ରାମ୍‌ଫୋନ୍ ଥିଲା । ତାହା ମଧ୍ୟ ସାଙ୍ଗରେ ଯାଇଥିଲା । ଗ୍ରାମଫୋନ୍ ବାଜେ, ଶଗଡ଼ରେ ଲଣ୍ଠନ ଥାଏ ଜଳେ । ଏହା ଛଡ଼ା ଗୋଟେ ପଞ୍ଚଲାଇଟ (ବଡ଼ ପେଟ୍ରୋମାକ୍ସ ଲାଇଟ୍) ଯାଇଥିଲା । ଲାଇଟ୍ ଜଳେ । ଖାଇସାରି କିଛି ସମୟ ବିଶ୍ରାମ କରି ରାତିରେ ଶଗଡ଼ ଯୋଚା ହୁଏ ଓ ଶଗଡ଼ ଚାଲେ । ସବୁ ବଳଦଙ୍କ ବେକରେ ଘଣ୍ଟି ବନ୍ଧା ହୋଇଥାଏ । ଆଜି ସେକଥା ମନେ ପଡୁଛି ସେତେବେଳେ ଭାରି ଭଲ ଲାଗୁଥିଲା ।

ପୁରୁଣା ରେଳ ଷ୍ଟେସନ୍‌ରୁ ଭୁବନେଶ୍ୱର ଆସିବା ପାଇଁ ଏକମାତ୍ର ଶଗଡ଼ ଗାଡ଼ିଥିଲା । ଯାତ୍ରୀମାନେ ଶଗଡ଼ରେ ଲିଙ୍ଗରାଜ ଦର୍ଶନକୁ ଆସୁଥିଲେ । ଭୁବନେଶ୍ୱରରୁ ଦୁଇ ଚାରିଟା ଡାଟ ଶଗଡ଼ ଆମ ସାହିରୁ (ହରଚଣ୍ଡୀ ସାହିରୁ) ଯାଏ । ବଡ଼ଗଡ଼ରୁ ବେଶୀ ଡାଟ ଶଗଡ଼ ଯାଉଥିଲା । ଆମ ସାହିର ଅନ୍ଧ ୰ଧନୁ ବେହେରାର ଗୋଟିଏ ଭଲ ଟିଣସିଟ୍ କଡାଗଦି ପକା ଡାଟ ଶଗଡ଼ ଷ୍ଟେସନ୍ ଯାତ୍ରୀ ଆଣିବାକୁ ଯାଏ । ବଡ଼ଭାଇନା କଟକରେ ପଢ଼ିବା ବେଳେ (କେଦାର ଭାଇନା) ଚାକିରି କଲାବେଳେ ମୁଁ, ବାସୁଭାଇନା, କୈଳାସ ଭାଇନା କଟକରେ ପଢ଼ିବାବେଳେ ଷ୍ଟେସନରୁ ଶଗଡ଼ରେ ଯିବାଆସିବା କରୁଥିଲୁ । ସମୟ ସମୟରେ ମୁଁ ସାଇକେଲରେ କଟକରୁ ଆସେ ।

ରେଲଷ୍ଟେସନ୍‌ରୁ ଭୁବନେଶ୍ୱର ଆସିବା ବାଟରେ ରାମେଶ୍ୱର ମନ୍ଦିର (ମାଉସୀମା ମନ୍ଦିର) ପାଖରେ ବାଉଁଶ ଜଙ୍ଗଲ ଥିଲା । ସେଠାରେ ବାଘ ଭୟ ଥିଲା । ବାଘ ବାହାରୁଥିଲା । ରାସ୍ତାରେ ଚୋର ଭୟ ମଧ୍ୟ ଥିଲା । ରାତି ୮ଟା ପରେ ୪।୫ ଜଣ ଶଗଡ଼ିଆ ଏକାଠି ହେଲେ ଭୁବନେଶ୍ୱର ଆସନ୍ତି । ୧୯୪୦ ମସିହା ବେଳକୁ ଗୋଟେ ଘୋଡ଼ାଗାଡ଼ି, ଭୁବନେଶ୍ୱର ରେଲଷ୍ଟେସନ୍ ଓ ଖଣ୍ଡଗିରି ଯାତ୍ରୀମାନଙ୍କୁ ନବାଆଣିବା କରୁଥିଲା । ଏହି ସମୟରେ ୰ ପଦ୍ମନନ୍ଦଙ୍କର ଗୋଟେ ଖୋଲା ମଟରଗାଡ଼ି ଟାଉନ୍ ବସ୍ ଚାଲିଲା । ତାଙ୍କର ଗୋଟେ ଛୋଟ ବସ୍ ଖୋର୍ଦ୍ଧାକୁ ଚାଲୁଥିଲା ।

ମୋର ପ୍ରଥମ ବିଭାଘର ଜଙ୍କିଆ ନିକଟ ଓଲସିଙ୍ଗ ଗ୍ରାମର ନରସିଂହ ପାଢ଼ୀଙ୍କ ଝିଅ, ତାରା ସଙ୍ଗେ 'ଛୋଟ କନ୍ୟା ବିଭାଘର' ହୋଇଥିଲା । (ବିଭାଘର ୬ ମାସ ନପୁରୁଣୁ ମୋ ସ୍ତ୍ରୀ ତାରା ହଇଜାରେ ମରିଗଲା) ଏହି ବିଭାଘରକୁ ଆମେ ରେଳରେ ଯାଇ ଜଙ୍କିଆ ଡାକ ବଙ୍ଗଳାରେ ରହିଲୁ । ସେହିଠାରୁ ମୁଁ ବରବେଶ ହୋଇ ଓଲସିଙ୍ଗର ୰ଦାଶରଥି ପଟ୍ଟନାୟକ (ଖୋର୍ଦ୍ଧା ଜିଲ୍ଲାର ବଡ଼ ସର୍ବରାକାର, ବଡ଼ଲୋକ) ଙ୍କର ଗୋଟିଏ ଅତି ଛୋଟ ହୁଡ ପକା ଅଷ୍ଟିଅନ୍ କାର ଥିଲା (ସେପରି ଛୋଟ ମଟରଗାଡ଼ି ଓଡ଼ିଶାରେ ଏବେ ଦେଖିବାକୁ ମିଳେନାହିଁ) ମୁଁ, ମାରକୁଣ୍ଡି ଜଙ୍କିଆରୁ ଓଲସିଙ୍ଗ ଗଲୁ । ଶ୍ୱଶୁର ଘର ଆଡୁ କେତେ ଖଣ୍ଡ ଓଦର ବନ୍ଧା (ଡାଟ ଶଗଡ଼ ନୁହଁ) ଶଗଡ଼ଗାଡ଼ି

ଆସିଥିଲା । ବୁଢ଼ାମାନେ ଶଗଡ଼ରେ ଗଲେ । କେତେଜଣ ଚାଲିକରି ଗଲେ । ସେତେବେଳେ ବନ୍ଧୁବାନ୍ଧବ, ଗ୍ରାମର ନିଜ ଜାତିର ବା ଅନ୍ୟ ଜାତିର ପ୍ରୀତିବନ୍ଧୁ, ବୟସ୍କ ଲୋକମାନେ ବରଯାତ୍ରୀରେ ଯାଉଥିଲେ । ଆଜିକାଲି ପରି ଯୁବକମାନେ ଓ ଝିଅ ବୋହୂମାନେ ବରଯାତ୍ରୀରେ ଯାଉନଥିଲେ ।

**ସିନେମା ହଲ :-**

ଭୁବନେଶ୍ୱର ପୋଷ୍ଟଅଫିସ୍ ସାମ୍ନାରେ ଗୋଟେ ବଡ଼ ଚାଳ ଘରେ ସିନେମା ଘର ଥିଲା । ତା ନାଁ 'ରୂପମନ୍ଦିର' ମୁଁ ଥରେ ଦୁଇଥର ସେ ସିନେମା ଘରକୁ ସିନେମା ଦେଖି ଯାଇଥିଲି । 'ସୀତାବିବାହ' ସିନେମା ମୁଁ ସେ ହଲରେ ଦେଖିଥିଲି । ସେ ହଲ୍ର ମାଲିକ ଥିଲେ କଟକର ହରମୁକ୍ ସିନେମା ହଲ ମାଲିକ ୰ ନରେନ୍ଦ୍ର କୁମାର ମିତ୍ର । ପରେ ଏ ସିନେମା ହଲ୍ 'ରୂପମନ୍ଦିର' ଭାଙ୍ଗି 'ରବିଟକିଜ୍' ସିନେମା ଘର କଲେ । ବର୍ତ୍ତମାନ ତାଙ୍କ ପିଲାମାନେ ରବି ଟକିଜ୍ ସିନେମା ହଲ୍ର ମାଲିକ ।

ଏଠି ଗୋଟେ ମଜାକଥା ମନେ ପଡୁଛି ମୁଁ ମୋର ବଡ଼ ମଝିଆଁ ଭାଉଜଙ୍କୁ ବିଭାଘର ପରେ ପ୍ରଥମ ପୁଆଣି ଆଣିବାକୁ ତାଙ୍କ ଘରକୁ ଯାଇଥିଲି । ତାଙ୍କ ଘର ସରକନ୍ତରା (ଡୁମୁଡୁମା) ପାଖ । ଆମ ଘରକୁ ଭାଉଜ ପାଇଁ ବେକକୁ, କାନକୁ ନାକକୁ, ମୁଣ୍ଡକୁ ହାତକୁ ବାହାକୁ ସବୁ ସୁନାଜିନିଷ ଏବଂ ଗୋଡ଼କୁ ରୂପାପାଉଁଜି ପିନ୍ଧିବାପାଇ ଦିଆ ହୋଇଥିଲା । ତାଙ୍କ ସାହିର ଏବଂ ଘରର ସ୍ତ୍ରୀଲୋକମାନେ କହିଲେ ଝିଅ ପାଇଁ କିଛି ରୂପା ଜିନିଷ ଆସିନାହିଁ ଝିଅ ଯିବ କେମିତି ? କଣ କରିବି ? ତାଙ୍କ ଗାଁରେ ଆମର ପ୍ରୀତିବନ୍ଧୁ ୰ ବଳି ସାହୁ (ବଣିଆଁ) ଝିଅ ଲକ୍ଷ୍ମୀ ବିଭା ହୋଇଥିଲା । ତାଙ୍କୁ କହିଲି । ସେ କହିଲା ଏଥିପାଇଁ ଭାଇନା ଭାବନା କ'ଣ ? ସେ ତାଙ୍କ ଘରୁ ରୂପାରଗୋଡ଼ଖଡୁ, ହାତଖଡୁ, ଅଣ୍ଟାସୂତା, ବଟଫଳ, ପ୍ରଭୃତି ବାଉଁସିଆରେ ବାଉଁସିଏ ହବ ରୂପା ଗହଣା ମାଜିମୂଜି ସଫା କରିଦେଲା । ମୁଁ ଭାଉଜଙ୍କୁ ପିନ୍ଧାଇ ଘରକୁ ଆଣିଲି । କିଛିଦିନ ପରେ ତାଙ୍କ ରୂପାଜିନିଷ ଫେରାଇ ଦିଆଗଲା । ସେତେବେଳେ ସୁନା ଜିନିଷ ଅପେକ୍ଷା ରୂପା ଗହଣାକୁ ଗାଁମାନଙ୍କରେ ବେଶି ପସନ୍ଦ କରୁଥିଲେ ।

**ଗହଣାଗାଣ୍ଠି :-**

ମୋ ପିଲାଦିନେ ସ୍ତ୍ରୀ ଲୋକମାନେ ବହୁ କିସମର ଗହଣା ପିନ୍ଧୁଥିଲେ । ମୁଣ୍ଡରେ କେତକି, ଚନ୍ଦ୍ରଝଲକ, ମଥାମଣି, ଝରୋକାଠି, ତାରା, ସୁନାଫୁଲ, ଅଳକା ।

କାନରେ-ଚମ୍ପାଗଣ୍ଠିଆ, କାନ ନୋଳି, ମାଙ୍କେଡ଼ି ପେଣ୍ଠି, କାନଫୁଲ, କୁଡ଼୍କି, ମଲକଢ଼ି, ବାଉଡ଼ି ଫାସିଆ ।

ନାକରେ-ନାକପେଣ୍ଠି, ବସଣି, ମୟୂରବସା ଗୁଣା, ନୋଥ, ଲୁଡ଼ୁକ, ନାକଚଣା, ଫୁଲଗୁଣା ।

ବେକରେ-ସୁନାର ଚାପସରି, ହରଡ଼ଫାଳ, କଣ୍ଠିମାଳ, ଗୋଅପଙ୍କ ଧାନୁଆ, ସୋରିସିଆ ମାଳି, ତଙ୍କିମାଳ, ଚେନ୍ ।

ହାତରେ-ରୂପା ଖଡ଼ୁ, ବଟଫଳ, ଚୁଡ଼ି, ତାଡ଼, ବାଙ୍କି ତଉଁରିଆ, ଚୁପୁଲି, ସୁନା ବା ରୂପା ଅନନ୍ତ ।

ଗୋଡରେ-ରୂପା ପାଉଁଜି, ଗୋଡ଼ଖଡ଼ୁ, ନୂପୁର, ଗୋଡ଼ବାଲା, ପାହୁଡ଼ ।

ଅଣ୍ଟାରେ-ରୂପାଗୋଠ, କମରପଟି, ଅଣ୍ଟାବିଛା, ଚାପସରି ।

ପୁଅପିଲା ଛୋଟ ବେଳେ ରୂପାର ଅଣ୍ଟାସୁତା, ବେକରେ ସୁନାଗୋପ, ରୂପା ହାତଖଡ଼ୁ, ଗୋଡଖଡ଼ୁ କାନରେ ସୁନା ଲବଙ୍ଗ, ସୁନାନୋଳି ପିନ୍ଧୁଥିଲେ । ଏସବୁ ଗହଣା କିଛି ମନେପକାଇ ବାକି ମୋ ସ୍ତ୍ରୀ ଚମ୍ପାବତୀଙ୍କୁ ପଚାରି ଲେଖିଛି ।

**ମହାମାରି, ଘରପୋଡ଼ି :-**

ପିଲାଦିନେ ଭୁବନେଶ୍ୱରେ ଜୁଲାଇ ମାସବେଳକୁ ଗୁଣ୍ଡିଚା ଯାତ୍ରା ବେଳେ ଭୀଷଣ ହଇଜା ହେଉଥିଲା । ଜଣ ଜଣଙ୍କ ଘରୁ ହଇଜାରେ ସମସ୍ତେ ମରି ଯାଉଥିଲେ । ସାହି ସାହିରେ ଭାଗବତ ପୂଜା ହୁଏ । କାଳେଣି ଲାଗନ୍ତି । ସେହି ପରି ବସନ୍ତ ରୋଗ ହୁଏ । ବସନ୍ତରେ ମଧ ବହୁତ ଲୋକ ମରିଯାନ୍ତି । ପଣା ଭୋଗ ହୁଏ । ସାହି ମାନଙ୍କରେ ଝୁଣା ଧୂଆଁ ଦିଆଯାଏ ।

ମୁଁ ଶୁଣିଛି ୧୯୦୫/୦୬ ମସିହା ବେଳେ ଭୁବନେଶ୍ୱରେ ଭୀଷଣ ଘରପୋଡ଼ି ହୋଇଥିଲା । ଭୁବନେଶ୍ୱର ଲୋକମାନେ ଘରଦ୍ୱାର ଛାଡ଼ି ବିନ୍ଦୁସାଗର କୂଳକୁ ପିଲାଛୁଆ ଧରି ଚାଲି ଯାଉଥିଲେ । ଲିଙ୍ଗରାଜ ମନ୍ଦିର

ପତକା ପୋଡ଼ିଯାଇଥିଲା ବୋଲି କହନ୍ତି । ଆମ ପିଲାଦିନେ ଅନେକ ଥର ଘରପୋଡ଼ି ହୁଏ । କାରଣ ସେତେବେଳେ ପ୍ରାୟ ଚାଳଛପର ଘର ଥିଲା । ୧୯୩୩/୩୪ ମସିହା ବେଳକୁ ଗୋଟେ ବଡ଼ ଘରପୋଡି ହୋଇଥିଲା । କପାଳିମନ୍ଦିର ନିକଟରୁ ଘରପୋଡ଼ି ଆରମ୍ଭ ହେଲା । ରେବା ମହାସୁଆରଙ୍କର ୪ ହଳ ବଳଦ ପୋଡ଼ିଗଲେ । ଏହି ଘରପୋଡ଼ିରେ ହରଚଣ୍ଡୀ ସାହି, ମିଶ୍ରସାହି ଏବଂ ଗୋଡିପୋଖରୀସାହିର ସବୁ ଘର ପୋଡ଼ିଗଲା । ମୁଁ ଦେଖିଛି ପବନରେ ନିଆଁ ଦୁଇଚାରି ଘର ଡେଇଁ ଡେଇଁ ଜଳିଉଠୁଥାଏ । ଆମେ ଆମ ଦାଣ୍ଡପଟ ଝରକା ନିଆଁ ଲାଗିଯିବବୋଲି ପାଣି ପକାଉଥାଉ । ଏହାପରେ ଆଉ ଏପରି ଘରପୋଡ଼ି ହୋଇନାହିଁ । ଏବେ ସାହିମାନଙ୍କରେ ପ୍ରାୟ କୋଠାଘର ହୋଇଗଲାଣି । କପିଳେଶ୍ୱରରେ ବହୁତ ଘରପୋଡ଼ିହୁଏ । କପିଳେଶ୍ୱର ସାହିଗଳି ଗୁଡିକ କମ୍ ଚଉଡ଼ା ହୋଇଥିବାରୁ ନିଆଁ ଲାଗିଲେ ବହୁତଘର ପୋଡ଼ିଯାଏ । ନିଆଁକୁ ସହଜରେ ଲିଭାଯାଇପାରେନାହିଁ । ଏବେ ଆଉ ଘରପୋଡ଼ି ହେଉନାହିଁ । ପ୍ରାୟ ଲୋକକୋଠାଘର କରିଗଲେଣି ।

ଭୁବନେଶ୍ୱର କଥା ଲେଖିଲାବେଳେ କପିଳେଶ୍ୱର କଥା କିଛି ଲେଖୁଛି । କପିଳନାଥଙ୍କୁ ଲିଙ୍ଗରାଜଙ୍କ ମନ୍ତ୍ରୀ ବୋଲି କହନ୍ତି । ଶିବରାତ୍ର ପରେ ଯେଉଁ ଶନିବାର ପଡ଼େ ଲିଙ୍ଗରାଜ ମହାପ୍ରଭୁ କପିଳେଶ୍ୱର ଯାନ୍ତି । କପିଳନାଥ ୨୨ଦିନ ଲିଙ୍ଗରାଜଙ୍କ ଚନ୍ଦନ ଯାତ୍ରା ଏବଂ ଦିଅଁବିଭା ଶୀତଳଷଷ୍ଠୀକୁ ଆସନ୍ତି । ଏହି ଗ୍ରାମର ପ୍ରାୟ ତିନିଭାଗ ମଳିଆ ସେବକ, ୧୦।୧୫ ଘର ଖୁଣ୍ଟିଆ (ବ୍ରାହ୍ମଣ) ସେବକ, ୪।୫ ଘର କପିଳିନାଥଙ୍କର ଗୁଡ଼ିଆ ବିଷୋଇ ସେବକ, ୪।୫ ଘର ସାହୁ (ତେଲି) ଘର ପ୍ରାୟ କୋଡ଼ିଏ ଘର ଚାଷୀ (ପଧାନ) ଘର, ଯୋଡ଼େ ଭୋଇ ସାହି ଗୋଟେ ମହେନ୍ତର ସାହି । ଦୁଇ ଚାରିଘର ଖୁଣ୍ଟିଆଘର ଏବଂ କେତେଜଣ ମଳିଆଙ୍କର ବହୁତ ଜମି ବାଡ଼ିଥିଲା । ହାତ ଚାଷ କରୁଥିଲେ । ପ୍ରଧାନ, ଖଣ୍ଡାୟତ ଙ୍କର ଯଦିବା ବେଶିଜମି ନଥିଲା କିନ୍ତୁ ସେମାନେ ଅନ୍ୟମାନଙ୍କର ଜମି ଚାଷକରି ଭଲରେ ଚଳୁଥିଲେ । ମଳିଆମାନେ କପିଳନାଥଙ୍କ ଉପରେ ନିର୍ଭର କରି ଚଳନ୍ତି । ମାଟ୍ରିକ୍, ମାଇନର ପାଶ କରିବା ଲୋକ ବହୁତ କମ ଥିଲେ । କପିଳନାଥଙ୍କୁ ଭୁବନେଶ୍ୱର, ବାଲିଅନ୍ତା,

ବାଲିପାଟଣା, ନିମାପଡ଼ା, ପିପିଲି ଥାନାର ଲୋକମାନେ ବହୁତ ମାନନ୍ତି । ମଲିଆ ମାନେ ଏହିସବୁ ଏରିଆରେ ତାଙ୍କର ଯଜମାନଙ୍କ ଘରୁ ଧାନ, ଚାଉଳ, ମୁଗ, ବିରି ପ୍ରଭୃତି ବହୁ ପରିମାଣରେ ସଂଗ୍ରହ କରି ଆଣନ୍ତି । ଟଙ୍କା ଦକ୍ଷିଣା ଆଣନ୍ତି ।

## ଏବେ ମୋ' କଥା :-

ମୋର ଜନ୍ମ ତା ୧୯୨୨ ମେ ମାସ ୧୮ ତାରିଖ । ଲିଙ୍ଗରାଜଙ୍କ ବୈଦ୍ୟ ପରିବାରରେ । ମୋର ପିତା ଗୋପୀନାଥ ମହାପାତ୍ର । ମାତା ରାଧିକା ଦେବୀ । ମୋ ନନା (ବାପା) ତିନି ଭାଇ । ବଡ଼ ଭାଇ ଧର୍ମୁ ମହାପାତ୍ର, ବାଞ୍ଛାନିଧି ଓ ଗୋପୀନାଥ । ଧର୍ମୁ ମହାପାତ୍ରଙ୍କର ପୁଅ ନଥିବାରୁ ସେ ମୋ ନନାଙ୍କୁ ପୁଅ କରିଥିଲେ । ତେଣୁ ବାଞ୍ଛାନିଧିଙ୍କୁ ସାନ ବାପା ଡାକୁ । ମୋ ଉପରେ ତିନି ଭାଇ ଏବଂ ଗୋଟେ ଭଉଣୀ । ଭଉଣୀ ଗୌରୀ ଦେବୀ ବଡ଼ । ତାଙ୍କ ତଳକୁ କେଦାରନାଥ, ବାସୁଦେବ, କୈଳାସ ଓ ମୁଁ ସବା ସାନ । ମୋର ପାଠପଢ଼ା ବହୁତ ଡେରିରେ ଆରମ୍ଭ ହେଲା । ପ୍ରଥମେ ଆମ ଘର ପାଖରେ କପାଳି ମନ୍ଦିର ବେଢ଼ାରେ ଚାହାଲିରେ ବର୍ଷେ ଖଣ୍ଡେ ପଢ଼ିଲି । ପରେ ଟାଉନ୍ ଏଲ୍.ପି. (ବର୍ତ୍ତମାନ ପଣ୍ଡିତ ରଘୁନାଥ ମାଇନର ସ୍କୁଲ)ରେ ମୋର ନାମ ଲେଖା ହେଲା । ସେତେବେଳେ ସୁନ୍ଦରପଦାର ମୃତ୍ୟୁଞ୍ଜୟ ନନ୍ଦ ହେଡ୍ ପଣ୍ଡିତ ଏବଂ କୃଷ୍ଣଚନ୍ଦ୍ର ମିଶ୍ର ୨ୟ ପଣ୍ଡିତ ଥିଲେ । ପରେ କୃଷ୍ଣଚନ୍ଦ୍ର ମିଶ୍ର ଖୋର୍ଦ୍ଧାରୁ ସିଟି ଟ୍ରେନିଂ ପାସ୍ କରି ରାମକୃଷ୍ଣ ମିଶନ୍ ୟୁ.ପି. ସ୍କୁଲ୍‌ର ହେଡ୍ ପଣ୍ଡିତ ହେଲେ । ପଣ୍ଡିତ କୃଷ୍ଣଚନ୍ଦ୍ର ମିଶ୍ର ମହାଶୟ ପ୍ରାୟ ୯୦ ବର୍ଷ ପର୍ଯ୍ୟନ୍ତ ବଞ୍ଚିଥିଲେ ଏବଂ ଶେଷ ଜୀବନ ପର୍ଯ୍ୟନ୍ତ ପିଲାମାନଙ୍କୁ ପଢ଼ାଉ ଥିଲେ । ମୋତେ ପଢ଼େଇଲେ । ମୋ ପୁଅ ରବିକୁ ଘରେ ଆସି ପ୍ରତିଦିନ ଘଣ୍ଟେ ଲେଖାଏଁ ପଢ଼ାନ୍ତି । ମୋ ନାତି ଆଦିତ୍ୟକୁ ପଢ଼ାଇବାକୁ ତାଙ୍କର ଇଚ୍ଛା ଥିଲା । କିନ୍ତୁ ବଳ ନପାଇବାରୁ ଘରକୁ ଆସିପାରିଲେ ନାହିଁ । ପଣ୍ଡିତ ମହାଶୟ ମୋତେ ଭାରି ସ୍ନେହ କରୁଥିଲେ ।

ଟାଉନ୍ ଏଲ୍.ପି. ସ୍କୁଲ୍‌ରୁ ପାସ୍ କରି ମାଇନର ପଢ଼ିଲି । ସେତେବେଳେ ସୁନ୍ଦରପଦାର ୰ ଉଦୟନାଥ ରାଉତରା ହେଡମାଷ୍ଟର, ୰ ପାଣ୍ଡବ ଯେନା ସାହିତ୍ୟ ଓ ୰ଅଗାଧୁ ଦାଶ ଅଙ୍କ ପଢ଼ାଉଥିଲେ । ଉଦୟନାଥ ରାଉତରା ବଡ଼

# ବଂଶାବଳୀ

ପଞ୍ଚାନନ ମହାପାତ୍ର

ଧରମୁ — ବାଞ୍ଛାନିଧି

ଗୋପୀନାଥ — ଇନ୍ଦୁମତୀ

ଗଉରୀ — କେଦାରନାଥ — ବାସୁଦେବ — କୈଳାସ — ଗୁଣନିଧି

ପ୍ରସନ୍ନ — ଦିଲ୍ଲୀପ — ପ୍ରତାପ — ନିର୍ମଳ — ଶୈଳ — ପ୍ରେମ

ଶକୁନ୍ତଳା — ସରଳା — ସୁଶୀଳା — ଶରତ

ଘନଶ୍ୟାମ — ହେମନ୍ତ — ଉର୍ମିଳା

ରବୀନ୍ଦ୍ର — ରତ୍ନମଣି



ସ୍ନେହୀ, ଛାତ୍ରବତ୍ସଳ ଥିଲେ । ସବୁ ମାଷ୍ଟରମାନେ ପିଲାମାନଙ୍କର ପାଠପଢ଼ାର ଯତ୍ନ ନେଉଥିଲେ । ଖୋର୍ଦ୍ଧାକୁ ଛାଡି ଦେଲେ ଆଖପାଖରେ ମାଇନର ସ୍କୁଲ ନଥିଲା । ତେଣୁ ବୋର୍ଡିଙ୍ଗରେ ପ୍ରାୟ ୨୦/୨୫ ଜଣ ବାହାର ଗ୍ରାମମାନଙ୍କରୁ ପିଲା ରହି ପଢୁଥିଲେ । ଭୁବନେଶ୍ୱରରୁ ବେଶୀ ପିଲା ପଢୁ ନଥିଲେ । ଆମରି ବ୍ୟାଚରେ ଦଶଜଣ ଆମେ ମାଇନର ପଢୁଥିଲୁ ଏବଂ ଭୁବନେଶ୍ୱରରୁ ମାଇନର ପରୀକ୍ଷା ଦେଇଥିଲୁ । ଖୋର୍ଦ୍ଧା ହାଇସ୍କୁଲକୁ ପରୀକ୍ଷା ଦେବାକୁ ଯାଇଥିଲୁ । ଭୁବନେଶ୍ୱର ବେଶୀ ସେବକ ପିଲା ସଂସ୍କୃତ ପଢୁଥିଲେ । ଆମେ ମାଇନର ପାସ କଲାବେଳେ ଭୁବନେଶ୍ୱରରେ ହାଇସ୍କୁଲ ନଥିଲା । ତେଣୁ ମୁଁ, ହରି, ଗନ୍ଧର୍ବ, ବାସୁ, ଅଭି, ବୃନ୍ଦାବନ, ପ୍ରଭୃତି ସାଙ୍ଗମାନେ ପୁରୀରେ, ହରି, ମୁଁ, ଅଭି କଟକରେ, ଗନ୍ଧର୍ବ, ବାସୁ, ବୃନ୍ଦାବନ ଭିଙ୍ଗାରପୁରରେ ପଢ଼ିଲୁ । କେତେ ଜଣ ବାହାରକୁ ପଢ଼ିବାକୁ ଯାଇ ନପଢ଼ି ରହିଗଲେ । ପରବର୍ଷ ଭୁବନେଶ୍ୱରର ବି.ଏମ୍. ହାଇସ୍କୁଲ୍‌ରେ ପଢ଼ିଲେ ।

ମାଇନର ପଢ଼ିବା ବେଳେ ମୋର ବଡଭାଇନା କେଦାରନାଥ ମହାପାତ୍ର କଟକ ରେଭେନ୍ସା କଲେଜରେ ବି.ଏ. ପଢୁଥିଲେ । ଛୁଟି ଦିନମାନଙ୍କରେ ତାଙ୍କର ଇତିହାସ ପ୍ରଫେସର ନିର୍ମଳ ଚନ୍ଦ୍ର ବାନାର୍ଜୀ ଆମଘରକୁ ଆସନ୍ତି । ମୁଁ ମୋର ସାଙ୍ଗମାନେ ପୁରୁଣା ପଇସା ଛୋଟ ଛୋଟ ପଥର ମୂର୍ତ୍ତି ସଂଗ୍ରହ କରି ଆଣି ଦେଉ । ଏହି ମାଇନର ପଢ଼ିବାବେଳେ ଗୋଟେ ମଜାକଥା ମନେ ପଡୁଛି । ପଣ୍ଡିତ କୁଳମଣି ଦାଶ ଆମଘରେ ରାତିରେ ଟିଉସନ୍ କରନ୍ତି । ମୁଁ, ହରି, ଅଭି, ଗଣେଶ, ଦାମୋଦର ମହାସୁଆର ଟିଉସନ ହେଉ । ଦିନେ ଆମେ ସିଗାରେଟ ଖାଇବାକୁ ମନକଲୁ । କୋଉଠେଇ ଖାଇବୁ, ରବିବାର ଦିନ ପୁରୁଣା ଷ୍ଟେସନ ରାସ୍ତାରେ ଯେମିତି କେହି ଦେଖିପାରିବେ ନାହିଁ ଯାଇ ସିଗାରେଟ ଖାଇଲୁ । ଦାମ ପଣ୍ଡିତଙ୍କୁ କହିଦେଲା ସମସ୍ତେ ମାଡ଼ଖାଇଲୁ । ସେହିଦିନୁ ମୁଁ ସିଗାରେଟ ଖାଏ ନାହିଁ ।

ଏହି ସମୟରେ କଂଗ୍ରେସ ପ୍ରଚାରରେ ପ୍ରାଣନାଥ ପଟ୍ଟନାୟକ, ଗୋକୁଳ ଚନ୍ଦ୍ର ରାଏ, ଚୂଡାମଣି ପ୍ରଭୃତି କଂଗ୍ରେସ ନେତାମାନେ ଆମ ଘରକୁ ଆସନ୍ତି । ଏହି ସମୟରେ ଭୁବନେଶ୍ୱରର ବହୁତ ଗରିବ ପିଲା ଅର୍ଥ ଅଭାବରୁ

ପଢ଼ିପାରୁନଥିଲେ । ମୋ ନନା, ବାସୁବନ୍ଧୁ, ମଧୁ ମକଦମ, ଲକ୍ଷ୍ମୀଧର ପୂଜାପଣ୍ଡା ପ୍ରଭୃତି ଗୋଟିଏ କମିଟି କରି ଯାତ୍ରୀମାନଙ୍କ ଠାରୁ କିଛି କିଛି ଅର୍ଥ ସଂଗ୍ରହ କରି ଗରିବ ପିଲାମାନଙ୍କୁ ସାହାଯ୍ୟ କରୁଥିଲେ ।

ପୁରୀରେ ମୁରାରି ତ୍ରିପାଠୀ ଭାରତସେବା ସମିତି ଅଶୋକା ଅଷ୍ଟମୀରେ ପାଣିବାଣ୍ଟିବା ପାଇଁ ବାଲ୍‌ଟି, ଖରାବେଳେ ପାଣି ଛିଞ୍ଚିବାପାଇଁ ସ୍ପ୍ରେ ମେସିନ୍ ଆଣି ଆସନ୍ତି । ଆମେ ଭଲେଣ୍ଟିୟର ହେଉ । ମୁଁ, ଅଭି ଭିକ୍ଟୋରିଆ ହାଇସ୍କୁଲରେ ପଢ଼ିଲୁ । (ବର୍ତ୍ତମାନ ଭିକ୍ଟୋରିଆ ହାଇସ୍କୁଲ ନାମ 'ଭକ୍ତ କବି ମଧୁସୂଦନ ବିଦ୍ୟାପୀଠ' ହୋଇଛି ।) ୧୯୪୬ ବେଳକୁ କଂଗ୍ରେସର ବଡ଼ ବଡ଼ ନେତାମାନେ ବ୍ରିଟିଶ୍ ସରକାର ବିରୁଦ୍ଧରେ ଭାରତ ଛାଡ ଆନ୍ଦୋଳନ କରି ଜେଲ ଗଲେ । ମୁଁ ମୋର ସାଙ୍ଗ ଦେବବ୍ରତ ପ୍ରତିହାରୀ (ପ୍ରାଣନାଥ ପ୍ରତିହାରୀଙ୍କ ପୁଅ) ଏବଂ ଅନ୍ୟ ସାଥିମାନେ ଆମ ସ୍କୁଲ ଆଗରେ ପିକେଟିଙ୍ଗ କରିବାକୁ ଠିକ୍ କଲୁ । ଦେବବ୍ରତ ନଆସିବାରୁ ପିକେଟିଙ୍ଗ କରି ପାରିଲୁ ନାହିଁ । ସ୍କୁଲ ଗେଟ ଆଗରେ ପିକେଟିଙ୍ଗ କରି ଜେଲ ଯିବାକୁ ଠିକ୍ କରିଥିଲୁ ।

ଓଡ଼ିଶାର ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ ସୁରେନ୍ଦ୍ର ନାଥ ଦ୍ୱିବେଦୀ ସରକାରଙ୍କ ବିରୁଦ୍ଧରେ ଲିଥୋ କରି ପ୍ରଚାର ପତ୍ର ବାଣ୍ଟୁଥିଲେ । ମୋର ସାଙ୍ଗ ବାଞ୍ଛାନିଧି ଦାଶ କଟକ ଟାଉନ୍‌ରେ ଅଫିସମାନଙ୍କରେ ଏବଂ ଦୋକାନ ମାନଙ୍କରେ ପ୍ରଚାର ପତ୍ର ବାଣ୍ଟନ୍ତି । ବାଞ୍ଛାନିଧି ଠାରୁ କିଛି ପ୍ରଚାର ପତ୍ର ନେଇ ଭୁବନେଶ୍ୱରରେ ମୋର ସାଙ୍ଗମାନଙ୍କୁ ଦେଇ ସାଙ୍ଗେ ସାଙ୍ଗେ କଟକ ଫେରି ଗଲି । ପୁଲିସ୍ ମୋ ପିଛାକରି ନନାଙ୍କୁ ପଚାରିଲା । ନନା କହିଲେ ଗୁଣ ଅନ୍ନ ନେବାକୁ ଆସିଥିଲା । ସେ ସଙ୍ଗେ ସଙ୍ଗେ କଟକ ଚାଲି ଗଲା । ତାପରେ ଆମ ହେଡ ମାଷ୍ଟରଙ୍କୁ ମୋ ବିଷୟରେ ରିପୋର୍ଟ ମଗାଗଲା । ହେଡ ମାଷ୍ଟର ୰ ନଗେନ ଚାଟାର୍ଜୀ ମୁଁ କଂଗ୍ରେସ କାମ କରେ ନାହିଁ ବୋଲି ମନା କରିଦେଲେ । ମୁଁ ରକ୍ଷାପାଇ ଗଲି ତା ନହେଲେ ଧରାହୋଇ ଜେଲ ଯାଇଥାନ୍ତି ।

୧୯୪୧ ମସିହାରେ 'ସମାଜ'ର ସମ୍ପାଦକ ଏବଂ ଓଡ଼ିଶାର ଶିକ୍ଷାମନ୍ତ୍ରୀ ପଣ୍ଡିତ ଲିଙ୍ଗରାଜ ମିଶ୍ରଙ୍କ ସହାୟତାରେ ଭୁବନେଶ୍ୱରରେ ହାଇସ୍କୁଲ ଆରମ୍ଭ ହେଲା ।

ଏହି ସମୟରେ ଆମେ ହରି, ଅଭି, ଘନ, ଶରତ, ବ୍ରଜ, ବୃନ୍ଦାବନ ପ୍ରଭୃତି ସାଙ୍ଗମାନେ ଗୋଟେ କମିଟି ଗଢ଼ିଥିଲୁ । ମୋର ବଡ଼ ମଝିଆଁ ଭାଇନା କବିରାଜ ବାସୁଦେବ ମହାପାତ୍ର ଆମର ମୁଖ୍ୟ ରହିଲେ । ପ୍ରଥମେ ଗୌରୀକୁଣ୍ଡ ଉଝାଳିଲୁ । କୁଣ୍ଡରେ ତିନିପଟ ବାଡ଼ ମରାମତି କଲୁ । କୁଣ୍ଡର ଉପର ପଟେ କୁଣ୍ଡରୁ ପାଣି ବାହାରି ଯିବାପାଇଁ ବାଟ ଅଛି । ଉତ୍ତରପଟେ ଗୌରୀକୁଣ୍ଡରେ ଯେଉଁ ସ୍ତରରେ ପାଣି ପଶେ ଠିକ୍ ସେହି ସ୍ତରରେ ପାଣି ବାହାରି ଯିବାପାଇଁ ଦକ୍ଷିଣ ପଟେ ପାଣି ବାହାରିଯାଏ । ଯେତେ ଲୋକ ଗାଧେଇଲେ ମଧ ପାଣି ପରିଷ୍କାର ରୁହେ । କିନ୍ତୁ ଦକ୍ଷିଣ ପଟ ପାଚେରି ଦବି ଯିବାରୁ ଗୌରୀ କୁଣ୍ଡ ପାଣି ଅପରିଷ୍କାର ହୋଇଗଲା । ପାଚେରିଟି ସମ୍ପୂର୍ଣ୍ଣ ଖୋଲି ତିଆରି କଲୁ । ଶ୍ୟାମକୁଣ୍ଡ (ଦାନ୍ତଘସା କୁଣ୍ଡ) କେଦାରକୁଣ୍ଡ, ମରାମତି କଲୁ । ଦୁଧକୁଣ୍ଡ (ଯେଉଁ କୁଣ୍ଡରୁ ଲୋକମାନେ ପାଣି ପିଇଥାନ୍ତି) ଏହି କୁଣ୍ଡର ପାଣି ପେଟ ରୋଗ ପାଇଁ ବହୁତ ଉପକାର କରେ । କୁଣ୍ଡ ଭିତରକୁ ପାହାଚ ଥିଲା । ଲୋକମାନେ ପାଣିନେବା ବେଳେ ପାଦପାଣି କୁଣ୍ଡକୁ ଯାଉଥିଲା । ତେଣୁ ସେ ପାହାଚ ବନ୍ଦ କରି ଝଞ୍ଜିର ବାଲ୍‌ଟି ଲଗାଇଲୁ । କେଦାରଗୌରୀ ମନ୍ଦିରର କେତେଜଣ ପଣ୍ଡା ବହୁତ ଆପତ୍ତି କଲେ, ବାଇଧର ସାମନ୍ତରା ଏବଂ କେତେଜଣ ପଣ୍ଡା ଆମକୁ ଏହି କାମରେ ସାହଯ୍ୟ କଲେ । କେଦାରନାଥଙ୍କ ମନ୍ଦିର ଏବଂ ଗୌରୀଙ୍କ ମନ୍ଦିର ମରାମତି କଲୁ । ଦ୍ୱାରବାସିନୀ ମନ୍ଦିର (ବିନ୍ଦୁସାଗର ପୂର୍ବପଟେ ଥିବା ମନ୍ଦିର) ପୁରା ଭାଙ୍ଗି ଯାଇଥିଲା । ତାକୁ ତିଆରି କଲୁ । ଦକ୍ଷିଣଚଣ୍ଡୀ ମନ୍ଦିର ଭାଙ୍ଗିଯାଇଥିଲା ତିଆରି କଲୁ । ପରକରଣ ସାହିରେ ଥିବା ଚାର ନାରାୟଣୀ ମନ୍ଦିର ତିଆରି କଲୁ । ବିନ୍ଦୁସାଗର ଉତ୍ତର ପଟେ ଥିବା ଉତ୍ତରେଶ୍ୱର ମନ୍ଦିର ବେଢ଼ାରେ ପ୍ରତ୍ୟକ୍ଷ ମହାଦେବ ଭୀମେଶ୍ୱରଙ୍କ ମନ୍ଦିର ପୂରା ଭାଙ୍ଗି ଯାଇଥିଲା । ଭୁବନେଶ୍ୱର ବିଶିଷ୍ଟ ବ୍ୟବସାୟୀ ଲକ୍ଷ୍ମୀଧର ଗରାବଡୁଙ୍କ ସାହାଯ୍ୟରେ ମନ୍ଦିର ଏବଂ ମନ୍ଦିରର ମୁଖଶାଳା ତିଆରି ହେଲା । ଉତ୍ତରେଶ୍ୱର ବେଢ଼ା ଏବଂ ବେଢ଼ା ମଧ୍ୟରେ ଥିବା ଗୋଦାବରୀ କୁଣ୍ଡ ଚାରିପଟ ପାଚେରି ମରାମତି ହେଲା । ବେଢ଼ା ମରାମତି ହେଲା । ଏ ସମସ୍ତ ଖର୍ଚ୍ଚ ଲକ୍ଷ୍ମୀଧର ଗରାବଡୁ ବହନ କରିଥିଲେ । ଅନ୍ୟ ଯେତେ ଗୁଡିଏ କାମ କରିଥିଲୁସେଥିପାଇଁ ଭୁବନେଶ୍ୱର ବାସିନ୍ଦା

ବିଶେଷତଃ ଭୁବନେଶ୍ୱରରେ ଜଳବାୟୁ ପରିବର୍ତ୍ତନ ପାଇଁ ଆସି ରହୁଥିବା ବଙ୍ଗାଳି ଭଦ୍ରଲୋକଙ୍କ ଠାରୁ, କଣ୍ଟ୍ରାକ୍ଟର ଲିଙ୍ଗରାଜ ମହାରଣା ଆମକୁ ବିଶେଷ ସାହାଯ୍ୟ କରିଥିଲେ । ତେଜରାତି ଦୋକାନି ଖେମିତି ଗୋକୁଳ ଦାସ ଆମ ସଙ୍ଗେ ରହିଥିଲେ ।

ବଡ଼ ଭାଇନା କେଦାରନାଥ ମହାପାତ୍ର ସମ୍ବଲପୁର ଜିଲ୍ଲା ସ୍କୁଲରୁ ସରକାରି ଚାକିରି ଛାଡି କଟକ ପି.ଏମ୍. ଏକାଡେମୀରେ ଯୋଗଦେଲେ । ଭିକ୍ଟୋରିଆ ସ୍କୁଲରୁ ଆଣି ମୋତେ ପି.ଏମ୍. ମଧ୍ୟଇଂରାଜୀ ବିଦ୍ୟାଳୟରେ ନାମ ଲେଖାଇଲେ । କଟକରେ ଗୋଟିଏ ଭଡ଼ାଘର ନିଆଗଲା । ମୁଁ, ଭାଉଜ, ଭାଇନା ଏବଂ ଭାଇନାଙ୍କ ବଡ଼ପୁଅ ପ୍ରସନ୍ନ ରହିଲୁ । ପ୍ରସନ୍ନ (ଅଗାଧୁ) ଛୋଟ ହୋଇଥାଏ । ଏହି ସମୟରେ ଅଗାଧୁ ସବୁବେଳେ ବେମାରରେ ପଡୁଥାଏ । ଭାଇନାଙ୍କର ଶ୍ୱାସ ରୋଗ ଥିଲା। ମଝିରେ ମଝିରେ ଶ୍ୱାସ ବାହାରେ । ତେଣୁ ମୋତେ ଅଗାଧୁକୁ ରାତିରେ ଜଗିବାକୁ ହୁଏ । ମୁଁ ସେତେ ଭଲ ପଢୁନଥିଲି । ଇଂରାଜୀରେ ବଡ଼ ଦୁର୍ବଳ । ମୋ ପାଠ ପଢ଼ାରେ ଟିକିଏ ବ୍ୟାଘାତ ହେଉଥିଲା ।

୧୯୪୨/୪୩ ବର୍ଷ ଆମ ବଂଶପାଇଁ ବଡ଼ ଦୁଃଖର ବର୍ଷ । ଏହି ସମୟରେ ମୋର ଦୁଇ ଭାଉଜ ମରିଗଲେ । କୈଳାସ ଭାଇନା ଏବଂ ବାସୁଭାଇନାଙ୍କ ସ୍ତ୍ରୀ । ମୋତେ ଏହି ଶୁଦ୍ଧି କାର୍ଯ୍ୟରେ କ୍ରିୟା ଧରିବାକୁ ହେଲା । ଏହା ମୋର ମାଟ୍ରିକ୍ ପରୀକ୍ଷା ବେଳେ ପଡ଼ିଲା । ତେଣୁ ମୁଁ ପରୀକ୍ଷା ଦେଇ ପାରିଲି ନାହିଁ । ଭାଇନା କଳାହାଣ୍ଡି ପ୍ରତ୍ନତତ୍ତ୍ୱ ଅଫିସର ଭାବେ ତା ୧୬।୧୧।୧୯୪୩ ରେ ଯୋଗ ଦେଲେ । ମୋର ୧୯୪୭ ମସିହାରେ ଓଳସିଂଙ୍ଗ ନୃସିଂହ ପାଢ଼ୀଙ୍କ ଝିଅ ତାରାଦେଈ ସହିତ ବିଭାଘର ହୋଇଥିଲା । ତାରା ଦେଈକୁ ପ୍ରାୟ ୧୧/୧୨ ବର୍ଷ ହୋଇଥିଲା । ସେତେବେଳେ ଛୋଟ କନ୍ୟା ବିଭାଘର ହେଉଥିଲା । ବିଭା ଘର ପରେ ମୋତେ ଭାଇନା କଳାହାଣ୍ଡି ନେଇଗଲେ । ବିଭାଘର ୬ ମାସ ନପୂରୁଣୁ ମୋ ସ୍ତ୍ରୀ ହଇଜାରେ ମରିଗଲା । ମୁଁ ଭବାନୀପାଟଣା ହାଇସ୍କୁଲରେ ତା ୧୬।୪।୧୯୪୪ ରେ ନାମ ଲେଖାଇଲି ଓ ୨୮।୨।୧୯୪୫ ରେ ମାଟ୍ରିକ୍ ପାସ୍ କଲି । ଏହି ବର୍ଷ ଡକ୍ଟର ପ୍ରାଣକୃଷ୍ଣ ପରିଜା କୃଷି ବିଭାଗର ଡାଇରେକ୍ଟର ଥିଲେ । ଆମର ତ କବିରାଜ ଘର ।

ସାନ ବାପା (ବାଞ୍ଛାନିଧି ମହାପାତ୍ର) କବିରାଜି କରୁଥାନ୍ତି । ମୋ ଉପରେ ଦୁଇଭାଇ କୈଳାସ ଭାଇନା । ବାସୁଭାଇନା କଟକରେ କବିରାଜି ପଢୁଥାନ୍ତି । ମୋର ଭାରି ଇଚ୍ଛା ଥିଲା କଲିକତାରେ ରହି ସେଠି ଡାକ୍ତରୀ ପଢ଼ିବାପାଇଁ । 'ଦଇବ ଦଉଡି ମଣିଷ ଗାଈ ଯେଣିକି ଟାଣଇ ତେଣିକି ଯାଇ' । ପରିଜା ସାହାବ ପି.ଡବ୍ଲ୍ୟୁ.ଡି ଡାକବଙ୍ଗଳା (ବର୍ତ୍ତମାନ କେଦାର ଗୌରୀ କ୍ଲବ୍) ରେ ଆଥାନ୍ତି । ବଡ଼ଭାଇନା ଛୁଟି ନେଇ କଳାହାଣ୍ଡିରୁ ଘରକୁ ଆସିଥିଲେ । ନୂଆ ହୋଇ କଟକ ବିଦ୍ୟାଧରପୁର ଫାର୍ମରେ କୃଷି ବିଭାଗର ସବ୍- ଓଭରସିୟର ଟ୍ରେନିଙ୍ଗରେ ଛାତ୍ର ନେବାପାଇଁ 'ସମାଜ'ରେ ବିଜ୍ଞାପନ ବାହାରିଥାଏ । ମୋର ସାଙ୍ଗ ବୃନ୍ଦାବନ ମହାପାତ୍ର ସେହି ବର୍ଷ ମୋ ସଙ୍ଗେ ମାଟ୍ରିକ୍ ପାସ କରିଥାଏ । ବୃନ୍ଦାବନ ଶଶୁର ପରିଜା ସାହାବଙ୍କର ପଣ୍ଡା । ଭାଇନା ପରିଜା ସାହାବଙ୍କୁ କହିଲେ । ବଡ଼ ଭାଇନା ପରିଜା ସାହବଙ୍କ ଛାତ୍ର ଥିଲେ ଏବଂ ପରିଡା ସାହାବ ଭାଇନାଙ୍କୁ ଭଲ ପାଉଥିଲେ । ଆମ ଦୁହିଁଙ୍କୁ କଟକରେ ଇଣ୍ଟରଭିଉ ଦବାପାଇଁ କହିଲେ । ଇଣ୍ଟରଭିଉରେ ପରିଜା ସାହାବ ଥିଲେ । ବହୁତ ପିଲା ଯାଇଥିଲେ । ଇଣ୍ଟରଭିଉରେ ଅନ୍ୟ ମେମ୍ବର କିଛି ପଚାରିବା ବେଳେ ପରିଜା ସାହାବ କହିଦେଲେ ମୁଁ ସେ ଦୁଇଜଣଙ୍କୁ ଜାଣେ । ତେଣୁ ଇଣ୍ଟରଭିଉରେ ଆଉ କେହି କିଛି ପଚାରିଲେ ନାହିଁ । ମୁଁ, ବୃନ୍ଦାବନ ସିଲେକ୍ଟ ହୋଇଗଲୁ ।

ଟ୍ରେନିଂ ପରେ ମୁଁ, ବୃନ୍ଦାବନ ତା ୧୬.୯.୪୬ରେ ପୁରୀ ଜିଲ୍ଲା କୃଷି ଅଫିସରେ ଚାକିରିରେ ଯୋଗଦେଲି । ପୁରୀ ଅଫିସରେ ଅଳ୍ପଦିନ ରହିବା ପରେ ପିପିଲି ଠାରୁ ଗୋଟେ କିଲୋମିଟର ପିପିଲି କୋଣାର୍କ ରାସ୍ତା କଡ଼ରେ ଥିବା ଫାର୍ମରେ ଯୋଗଦେଲି । ସେତେବେଳ ଫାର୍ମ ଅବସ୍ଥା ଅତି ଶୋଚନୀୟ । ୧୫ ଏକର ଜମିରୁ ମୋଟ ୭୫ ମହଣ ଧାନ ସେ ବର୍ଷ ଆଦାୟ ହୋଇଥିଲା । କାରଣ ହେଉଛି ଫାର୍ମ ଗୋଟିଏ କାଢ ନିକଟରେ । ଭାର୍ଗବୀ ନଦୀରେ ବଢ଼ି ପାଣି ଆସିଲେ କାଢବାଟେ ପାଣିଆସି ଫାର୍ମ ବିଲସବୁ ବୁଡ଼ିଯାଏ । ଫାର୍ମ ଚାଷକରାଯାଉଥିବା ଉନ୍ନତ ବିହନ ନଈପାଣିରେ ବୁଡି ରହି ସଢ଼ି ଯାଏ । ଧାନ ଜମି ପଡିଆ ପଡ଼େ । ମୁଁ ଫାର୍ମ ଦାୟିତ୍ୱ ନେବା ପରେ ଅଧିକା ଧାନ ତଳି ପକାଇ ରଖେ । ନଈବଢ଼ି ପରେ ଯେଉଁ ବିଲରେ ଧାନ ଗଛ ନଈ ପାଣିରେ ସଢ଼ି ଯାଏ

ଆଭ ଥରେ ରୋଇଦିଏ । ମୁଁ ଫାର୍ମ ଦାୟିତ୍ୱ ନେବା ପରେ ୩୦୦ ମହଣ ଧାନ ମିଳିଲା । ଫାର୍ମ ଅଫିସ ଚାରିପଟ ପଡ଼ିଆ ପଡ଼ିଥିଲା । ସେଥିରେ ବର୍ଷାଦିନିଆ ପନିପରିବା ଚାଷ କଲି । ଅମୃତ ଭଣ୍ଡା ଚାଷ କଲି । ଧାନ ବିହନ ଏବଂ ଏହି ପନିପରିବା ଚାଷରୁ ଅର୍ଥ ଉପାର୍ଜନ କରି ଫାର୍ମର ଲାଭ ବହୁତ ବଢ଼ାଇଦେଲି । ମୁଁ ତାସ, ପଶା ଖେଳ ଜାଣେ ନାହିଁ । ଫାର୍ମ କାମ ଦେଖିବା ସଙ୍ଗେ ସଙ୍ଗେ ସମୟ ପାଇଲେ ପଢ଼ା ପଢ଼ି କରେ । ଫାର୍ମ ନିକଟରେ ଡିହସାହି ଗ୍ରାମ । ଗ୍ରାମବାସୀମାନେ ଏହି ଫାର୍ମ ଭିତର ଦେଇ ରାତିରେ ବଜାର କରି ଫେରନ୍ତି । ମୋ ପାଖରେ ବସି ଚାଷ ବିଷୟରେ ଆଲୋଚନା କରନ୍ତି ।

ଫାର୍ମ ଦାୟିତ୍ୱରେ ରହିଲେ ତୁମକୁ ଅନିଚ୍ଛା ସତ୍ତ୍ୱେ ଚୋରି କରିବାକୁ ପଡ଼ିବ ଏକଥା ମତେ ଜଣାନଥିଲା । ମୋ ଇଚ୍ଛା ବିରୁଦ୍ଧରେ ମାସକୁ ୫/୧୦ ଟଙ୍କାର ଚୋରି କରିବାକୁ ହେଲା । ମୁଁ ଫାର୍ମ ଦାୟିତ୍ୱ ନବା ପୂର୍ବରୁ ବ୍ରହ୍ମାନନ୍ଦ ଶତପଥି କାମଦାର (ପରେ ଫିଲ୍ଡ ମ୍ୟାନ) ଦାୟିତ୍ୱରେ ଥିଲେ । ମୁଁ ଫାର୍ମର ଦାୟିତ୍ୱ ନେବା ପରେ ପ୍ରତି ମାସରେ ଅଫିସରମାନେ ଫାର୍ମ ପରିଦର୍ଶନରେ ଆସନ୍ତି । ତାଙ୍କ ପିଛା ଯାହା ଖର୍ଚ୍ଚ ହୁଏ ମୁଁ ହାତରୁ ଦିଏ । ତିନି ଚାରିମାସ ଦେଲି । ବ୍ରହ୍ମାନନ୍ଦଙ୍କୁ କହିଲି କିଛି ଟଙ୍କା ତା ଦରମାରୁ ଦେବାପାଇଁ । ସେ କହିଲା ଟ ୪୦ ଙ୍କା ଦରମା ପାଉଛି । ସେଥିରୁ ୨୫/୩୦ ଟଙ୍କା ଘରକୁ ପଠାଇଲେ ମୋ ସଂସାର ଚଳିବ । ବାକି ୧୦/୧୫ ଟଙ୍କାରେ ଚଳିବି । ଆପଣଙ୍କୁ ଦେବି କେଉଁଠାରୁ । ଆପଣ ବଡ଼ଲୋକ ଘରକୁ ଟଙ୍କା ନପଠେଇଲେ ଚଳିବ । ତେଣୁ ଆପଣ ଦିଅନ୍ତୁ । ମୁଁ କହିଲି ଅଫିସରମାନେ ସବୁ ମାସରେ ଆସିବେ ମୁଁ କେତେ ଦେବି ? ବ୍ରହ୍ମାନନ୍ଦ କହିଲା ଯେତିକି ଅଫିସରଙ୍କ ପିଛା ଖାଇବା ଖର୍ଚ୍ଚ ହେଉଛି, ସେତିକିର ହିସାବ ମୋତେ ଦେଲେ ମୁଁ ଫାର୍ମର ଖର୍ଚ୍ଚରେ ପକାଇ ଆପଣଙ୍କୁ ଦେଇଦେବି । କେହି ଜଣେ ହେଲେ ଅଫିସର କେବେ ପଚାରନ୍ତି ନାହିଁ କେତେ ଟଙ୍କା ଖାଇବାରେ ଖର୍ଚ୍ଚ ହେଲା । ମୁଁ ବୁଝିଲି ଅଫିସର ମାନଙ୍କ ଧାରଣା ଯେଉଁ ମାନେ ଫାର୍ମ ଦାୟିତ୍ୱରେ ରହନ୍ତି ସେମାନେ ଫାର୍ମ ଆୟରୁ ଖାଆନ୍ତି । କେହି ଅଫିସର କେତେ ଖର୍ଚ୍ଚ ହେଲା ପଚାରନ୍ତି ନାହିଁ । କିଛିଦିନ କୃଷିବିଭାଗରେ ଚାକିରି କରିବା ପରେ ଜାଣିଲି କୃଷିବିଭାଗର ଯେତେ ଜଣ ଅଫିସର

ଫାର୍ମପରିଦର୍ଶନରେ ଆସନ୍ତି ସେମାନଙ୍କ ମଧ୍ୟରୁ ୬ ଦିନବନ୍ଧୁ ମହାପାତ୍ର ଆସିଷ୍ଟାଣ୍ଟ ଡାଇରେକ୍ଟରଙ୍କ ପରି କେତେଜଣ ଅଫିସର ଯାହା ତାଙ୍କ ପିଛା ଫାର୍ମ ପରିଦର୍ଶନ ବେଳେ ଖର୍ଚ୍ଚ ହୋଇଥାଏ ସେମାନେ ଦେଇଥାନ୍ତି । ଏପରିକି କମକରି କହିଲେ ସେମାନେ ବିରକ୍ତ ହୁଅନ୍ତି ।

ଏହି ପିପିଲି ଫାର୍ମରେ ଥିବାବେଳେ ମୋର ସାଙ୍ଗ-ହରି, ଅଭି, ଗନ୍ଧର୍ବ ପ୍ରଭୃତି ସାଙ୍ଗମାନେ ରବିବାର ମାନଙ୍କରେ ଆସନ୍ତି । ମୁଁ ଭଲ ଗୁଆଘିଅ ରଖିଥାଏ । ସେତେବେଳେ ଗୁଆଘିଅ କଟିକି ସେର (ବର୍ତ୍ତମାନର ମାପରେ ଦେଢ଼ଲିଟରରୁ ଅଧିକ) ଟ ୧ ବା ଟ ୧.୨୫ ପ. (ଏକ ଟଙ୍କା ପଚିଶ ପଇସା) । ସେମାନେ ଭଲ ଅରୁଆ ଚାଉଳ, ଡାଲି, ପରିବାପତ୍ର ଭୁବନେଶ୍ୱରରୁ ନେଇଥାନ୍ତି । ଗନ୍ଧର୍ବର ଗୋଟେ ବନ୍ଧୁକ ଥାଏ । ହରଡ଼ ଚଢ଼େଇ ମାରୁ । ଭୋଜି କରୁ । ଖରାଦିନେ ମୋତେ ଆଗରୁ ଖବର ଦିଅନ୍ତି ମୁଁ ବଜାରରୁ କଟିକି ସେରେ ଖାସି ମାଂସ ଆଣି ରଖେ । (କଟିକି ସେର ପ୍ରାୟ ଦେଢ଼ କିଲ ପାଖପାଖି) ସେରକର ମୂଲ୍ୟ ଟ.୧.୨୫ ପଇସା ବା ୧ ଟଙ୍କା । ଖାଣ୍ଟି ଗାଈ କ୍ଷୀର ସେର ଏକ ଅଣା ବା ନୂଆ ୬ ପଇସା । ୧୯୪୮ ମସିହା କଥା । ସେହି ସମୟରେ ପିପିଲି ଏରିଆରେ ଭୀଷଣ ମେଲେରିଆ ଜ୍ୱର ହେଉଥିଲା । ମୁଁ ଘରୁ କିଛି କବିରାଜି ମେଲେରିଆ ଔଷଧରେ ପାଲୋଡ୍ରିନ ବଟିକା (ଏଲୋପାଥିକ ମେଲେରିଆ ବଟିକା) ମିଶେଇ ଲୋକଙ୍କୁ ଦେଲି । ୪/୫ ପାନରେ ମେଲେରିଆ ଜର ଭଲ ହୋଇଗଲା । ଫାର୍ମ ପାଖରେ ଥିବା ଜଗନ୍ନାଥପୁର ଡିହସାହି, ଡଗରା ସାହି ମେଲେରିଆ ରୋଗୀ ମାନେ ଆସିଲେ । ମୁଁ କେବଳ ଔଷଧ ଦାମ ରଖି ଔଷଧ ଦିଏ । ଆସ୍ତେ ଆସ୍ତେ ଅନ୍ୟ ରୋଗୀ ମଧ୍ୟ ଆସିଲେ । ମୁଁ ସେମାନଙ୍କୁ ମୋ ବାପାଙ୍କ କବିରାଜ ବାଞ୍ଛାନିଧି ମହାପାତ୍ର ପାଖକୁ ପଠାଇଦିଏ । ସେମାନେ ବହୁତ କମ ଖର୍ଚ୍ଚରେ କବିରାଜି ଔଷଧ ଖାଇ ଭଲ ହୋଇଯାନ୍ତି । ୧୯୪୮ ମସିହାରେ ଦରଡ଼ା ନିବାସୀ ନକୁଳ ପଣ୍ଡାଙ୍କ ଝିଅ ଚମ୍ପାବତୀଙ୍କ ସଙ୍ଗେ ମୋର ବିଭାଘର ହେଲା ।

ମୁଁ ପିପିଲି ଫାର୍ମରେ ଥାଏ । ବିଜୟରାମ ମିଶ୍ର ପି.ଡବ୍ଲ୍ୟୁ.ଡି ର ଏସ୍‌ଡିଓ ପିପିଲିରେ ଥାନ୍ତି । ଦିନେ ମୋ ନନା ତାଙ୍କ ଭଉଣୀ ଘର ନିମାପଡ଼ା

ପାଖ ବିଶ୍ୱାଳ ସାହି ଯାଇଥିଲେ । ଫେରିବା ବେଳେ ଫାର୍ମରେ ମୋ ପାଖକୁ ଫାର୍ମ ଦେଖିବାକୁ ରହିଗଲେ । ବିଜୟରାମ ମିଶ୍ରଙ୍କ ସଙ୍ଗେ ନନାଙ୍କର ଦେଖା ହୋଇଗଲା । ବିଜୟରାମ ମିଶ୍ର ନନାଙ୍କୁ କହିଲେ ମଉସା କେଦାର ବାବୁ (ବିଜୟରାମ ମିଶ୍ର ଭାଇନାଙ୍କ କେଦାର ବାବୁଙ୍କ ପିଲାଦିନ ସାଙ୍ଗ) ଏତେ ଟଙ୍କା ଦରମା ପାଇ ତୁମକୁ କ'ଣ ଦେଉଥିବେ, ଗୁଣ ଏ ଫାର୍ମ ଟ ୬୦/- ଦରମା ପାଇ (ସେତେବେଳେ ମୋ ଦରମା ଟ ୬୦/- ଥିଲା) ଦେବ, କାହିଁକି ଏ ଛୋଟିଆ ଫାର୍ମରେ ସାପ ବଣରେ ତାଁକୁ ରଖିଛ । ମୁଁ ଜାଣେ ସେ ଭାରି କର୍ମଠ । ତମର ତ ବହୁତ ବିଲବାଡି ଅଛି (ସେତେବେଳେ ଆମର ବିଲ, ଆମ୍ବତୋଟା, ବାଉଁଶ ବଗିଚା ମିଶି ପ୍ରାୟ ଶହେ ଏକର ଥିଲା) । ଘରେ ରହି ଠିକାଦାରି କରନ୍ତା ଜମିବାଡି ବୁଝନ୍ତା । ନନା ବୋଉକୁ କହିଲେ ବୋଉ ମତେ ଚାକିରି ଛାଡ଼ିବାକୁ ବାଧ କରୁଥାଏ । ଏହି ସମୟରେ ୧୯୪୯ ଡକ୍ଟର ଚେଲମ ଫାର୍ମବିଭାଗର ଆସିଷ୍ଟାଣ୍ଟ ଡାଇରେକ୍ଟର ଥିଲେ । ତୁମେ ଯେତେ ଭଲ କାମ କଲେ ମଧ ସେ କେବଳ ତାଙ୍କ ତଳ ଅଫିସର ଭୁଲ ଦେଖିବା ତାଙ୍କର କାମ । ୧୯୪୯ ମେ ମାସରେ ଫାର୍ମ ପରିଦର୍ଶନରେ ଆସିଲେ । ସେହି ସମୟରେ ଫାର୍ମ ଘର ଛପର ହୋଇଥାଏ । ମତେ କହିଲେ ଘର ଛପରରେ ବହୁତ ଟଙ୍କା ଖର୍ଚ୍ଚ ହୋଇଗଲା । ମୁଁ କହିଲି ମୋର ଛପର ଘର ନାହିଁ । ସ୍ଥାନୀୟ ଲୋକଙ୍କ ଠାରୁ ବୁଝିଲି । ଲୋକମାନେ ଯେତିକି ଲୋକ କହିଲେ ସେହି ଅନୁସାରେ ଘର ଛପର ମଜୁରି ଦେଇ ଘର ଛପର କଲି । ମୋର ଆଉ ଗୋଟେ ଦିଇଟା ଭୁଲବାହାର କରି ମୋର ବାର୍ଷିକ ବଢ଼ିଲା ଦରମା (ଇନ୍‌କ୍ରିମେଣ୍ଟ) ବନ୍ଦ କରିବା ପାଇଁ ଡାଇରେକ୍ଟରଙ୍କୁ ଲେଖିଦେଲେ । ଡକ୍ଟର ଏଚ.କେ.ନନ୍ଦି ଓଡ଼ିଶାର କୃଷି ବିଭାଗର ଜଏଣ୍ଟ ଡାଇରେକ୍ଟର ଥିଲେ । ଡ଼କ୍ଟର ଏଚ.କେ.ନନ୍ଦି ଭାରତବର୍ଷରେ ଜଣେ ବଡ଼ କୃଷି ବିଷାରଦ । ଡକ୍ଟର ପ୍ରାଣକୃଷ୍ଣ ପରିଜା ଯେତେବେଳେ କିଛି ଦିନ ପାଇଁ କୃଷି ବିଭାଗର ଡାଇରେକ୍ଟର ଥିଲେ, ଡକ୍ଟର ଏଚ.କେ.ନନ୍ଦିଙ୍କୁ ଓଡ଼ିଶାକୁ ଆଣିଥିଲେ ।

ପୂର୍ବରୁ ଚେଲମ ସାହାବ ମୋର ପ୍ରଶଂସା କରି କେବେ ତାଙ୍କୁ କହିଥିଲେ ଏବଂ ମୋର ପ୍ରମୋସନ ପାଇଁ ସୁପାରିଶ କରିଥିଲେ । ୧୯୪୯

ମେ କି ଜୁନ୍ ମାସ ହେବ । ନନ୍ଦି ସାହବ ପୁରୀ ଯିବା ରାସ୍ତାରେ ପ୍ରାୟ ଦିନ ଗୋଟେ ବେଳ ହେବ ପିପିଲି ଫାର୍ମକୁ ଆସିଲେ । ମୁଁ ହାପପ୍ୟାଣ୍ଟ ପିନ୍ଧି ବାଡ଼ି ଧରି ଫାର୍ମ ବିଲ ଭିତରେ ବୁଲୁଥାଏ । ଆଗରୁ ତାଙ୍କୁ ଚିହ୍ନିଥିଲି । ତାଙ୍କ ସାଙ୍ଗରେ ନିହାର ରଞ୍ଜନ ପାଣିଗ୍ରାହୀ (ଆସିଷ୍ଟାଣ୍ଟ ଡାଇରେକ୍ଟର) ଆସିଥାନ୍ତି । ମୋତେ ଫାର୍ମ ବିଷୟରେ ସବୁ ପଚାରିଲେ । ଫେରେ ଜୁନ ମାସରେ ଆସିଲେ । ମୁଁ ବହୁତ ଗୁଡ଼ିଏ ଧାନ ତଲି ଫାର୍ମ ଅଫିସ ଚାରିପଟେ ପକାଇଥାଏ । ସେ ମୋତେ ପଚାରିଲେ ଏତେ ଧାନ ତଲି କାହିଁକି ପକାଇଛ ? ମୁଁ କହିଲି ଫାର୍ମର ନଈପାଣି ପସି ଧୋଇ ହୋଇଯାଏ ତେଣୁ ବେଶି ତଲି ପକାଇଛି । କହିଲେ ଯାହା ଧାନ ତଲି ବଳିବ ଭୁବନେଶ୍ୱର ଫାର୍ମକୁ ଦେବ । ୧୯୪୯ ବେଳକୁ ଭୁବନେଶ୍ୱର ଫାର୍ମ ଆରମ୍ଭ ହୋଇଯାଇଥାଏ । ନନ୍ଦି ସାହାବ କିଛି ଉନ୍ନତ ଧାନ ବିହନ ଓଡ଼ିଶାକୁ ଆସାମରୁ ଆଣିଥିଲେ । ଯେଉଁ ବିଲ ଖରାଦିନେ ପୁରା ସୁଖେ ନାହିଁ ସେହି ବିଲରେ ସେ ଧାନ ହୁଏ । ସେହିପରି ଫାର୍ମରେ ଅଧଏକର ଖାଲ ଜମି ଥିଲା । ମୁଁ ସେ ଧାନ ସେ ବିଲରେ କରିଥିଲି । ସେ ମୋତେ ପଚାରିଲେ ତୁମେ କିପରି ଏ ଧାନ ସେ ଖାଲ ବିଲରେ ବୁଣିଲ । ମୁଁ କହିଲି ସ୍ଥାନୀୟ ଚାଷୀମାନଙ୍କ ଠାରୁ ବୁଝି ଧାନବିହନରେ ଗୋବର ମିଶାଇ ଛୋଟ ଛୋଟ ଗୁଳାକରି ପକାଇଲି । ନନ୍ଦି ସାହବ ଶୁଣି ଭାରି ଖୁସି ହେଲେ । ପରେ ପରେ ଆଉ ଥରେ ଆସି ସେ ଧାନ କିପରି ହୋଇଛି ଦେଖିଲେ । ମୋର ଶିକ୍ଷାଗତ ଯୋଗ୍ୟତା ପଚାରିଲେ ଏବଂ କହିଲେ ତୁମକୁ ମୁଁ ଗୋଟେ ଟ୍ରେନିଂରେ ଯିବାପାଇଁ ଡାଇରେକ୍ଟରଙ୍କୁ ଲେଖିଛି । ଟ୍ରେନିଂରୁ ଆସିଲେ ଭୁବନେଶ୍ୱର ଫାର୍ମରେ ରହିବ । ସେତେବେଳେ ମୋ ମନ ଭାରି ଖରାପ ଥାଏ । ଏପରିକି ଚାକିରି ଛାଡିବାକୁ ଇଚ୍ଛାକରିଥାଏ । ଭଗବାନ ମୋର ପରିଶ୍ରମର ଫଳଦେଲେ ।

ସେପ୍ଟେମ୍ବର ମାସରେ Crop Weather Metrology Trainingରେ ପୁନା ଗଲି । ଟ୍ରେନିଂ ଯିବା ପୂର୍ବରୁ ଅଳ୍ପଦିନ ପାଇଁ ମୋତେ ନିମାପଡ଼ା ଯିବାକୁ ହେଲା । ଏହି ନିମାପଡ଼ାରେ ଥିବା ଭିତରେ ମୁଁ ନିମାପଡ଼ା ସପ୍ଲାଇ ଅଫିସର ଦିନେ ଯାଇ ରାଡ଼ସିଂଙ୍କୁ ପ୍ରାୟ ସନ୍ଧ୍ୟା ୬ଟାରେ ଦେଖାକଲୁ । ରାଡ଼ସିଂ ପୁରୀ ଜିଲ୍ଲାର ବଡ଼ ଜମିଦାର ଥିଲେ । ଆମେ ଦେଖାକଲା ବେଳେ ତାଙ୍କର ଜମିଦାରି

ନଥିଲା କିନ୍ତୁ ବହୁତ ଧାନ ଜମି ଥିଲା । ଆମେ ଦେଖା କଲାବେଳେ ରାଉ୍‌ସିଂଙ୍କୁ ପ୍ରାୟ ୯୦ ବର୍ଷ ହେବ । ଗୋଟିଏ କତା ଖଟିଆରେ ବସିଥିଲେ । ପାଖରେ ଗୋଟେ ତିନିହାତିଆ ଖଣ୍ଡା । ଖଟିଆକୁ ଲାଗି ଥୁଆ ହୋଇଥାଏ । ତାଙ୍କ ନାଁ ମୋର ମନେ ପଡୁନାହିଁ ଭାରି ଜ୍ଞାନୀ ଲୋକ । ସନ୍ଧ୍ୟା ୬ଟାରୁ ରାତି ନଅଟା ପର୍ଯ୍ୟନ୍ତ ଆମ ସଙ୍ଗେ ବହୁତ ଆଲୋଚନା କଲେ । ଆମର ଘର ଠିକଣା ପଚାରିଲେ । ମୁଁ ବୈଦ୍ୟ ଧରମୁ ମହାପାତ୍ରଙ୍କ ନାତି ଶୁଣି ଭାରି ଖୁସିହେଲେ । ବାପା ତାଙ୍କର କବିରାଜ ଥିଲେ । ତାଙ୍କର ବଡ଼ ବଡ଼ କୋଠିରେ ଧାନ ଭର୍ତ୍ତିଥାଏ । ଟଙ୍କାକୁ ଦୁଇ ଗଉଣି ଧାନ ବିକ୍ରୟ ପାଇଁ କହିଲେ ଏବଂ ଶରତ ରଖିଲେ ପ୍ରଥମେ ଗଡ଼ ଅଣ୍ଡିଆ ବାଲା ଧାନ ନେବେ (ତାଙ୍କ ଘର ଗଡ଼ ଅଣ୍ଡିଆ) ପରେ ଅଣ୍ଡିଆ ଶାସନ ବାଲା ନେବେ ତାପରେ ନିମାପଡ଼ା ବଜାର ବାଲାଙ୍କ ପରେ ପାଟପୁର ଲୋକମାନେ ନେବେ । ଯୋଡ଼େ କୋଠି ଅମାର ଧାନ ବିକ୍ରୟ ହେବ ବୋଲି କହିଲେ ।

ମୁଁ ଟ୍ରେନିଂରୁ ଆସି ଭୁବନେଶ୍ୱର ଫାର୍ମରେ ୧୯୫୦ ଜାନୁଆରୀ ମାସରେ ଓଭରସିଅର ଭାବେ ଯୋଗଦେଲି । ଫାର୍ମ ମଝିରେ ଯେଉଁ ଅବଜରଭେଟେରି ଅଛି ତିଆରି କଲି । ପ୍ରତିଦିନ ସୂର୍ଯ୍ୟ ଉଦୟ ବେଳେ ଦିନ ୨ଟାରେ ଏବଂ ସୂର୍ଯ୍ୟ ଅସ୍ତ ବେଳେ ରିଡିଙ୍ଗ ନେବାକୁ ହୁଏ । ତେଣୁ ମୋର ନିତ୍ୟକର୍ମ ସାରି ଘରୁ ଭୋର ୫ଟାରେ କି ଖରା, ଶୀତ, ବର୍ଷା ଋତୁରେ ଫାର୍ମକୁ ଯିବାକୁ ହୁଏ । ଫାର୍ମରେ ମୋର ବନ୍ଧୁ, ଗୟାଧର ରଣା, ନୀଳମଣି ମିଶ୍ର, ପାଣିଗ୍ରାହୀ, ପାଲବାବୁ ଓଭରସିଅର ଥାନ୍ତି । ଫକୀର ଦାସ, ନବକିଶୋର ଦାଶ, କିଶୋର ବାବୁ ଏମ୍.ଏସ୍.ସି. ପାସ କରି ଫାର୍ମରେ ଓଭରସିୟରରେ ଯୋଗ ଦେଇଥାନ୍ତି । ୰ ଜଗନ୍ନାଥ ହୋତା ଆସିଷ୍ଟାଣ୍ଟ ଡାଇରେକ୍ଟର ଫାର୍ମ ଦାୟିତ୍ୱରେ ଥାନ୍ତି । ମୁଁ ଫାର୍ମ ଚାରିପଟେ କଣ୍ଟା ତାର ବାଡ଼ କରିବା ଏବଂ ଫାର୍ମ ମଝିରେ ରାସ୍ତା କରିବା ଦାୟିତ୍ୱରେ ଥିଲି । ହୋତା ବାବୁଙ୍କ ପରେ ୰ ଦୀନବନ୍ଧୁ ମହାପାତ୍ର ଆସିଷ୍ଟାଣ୍ଟ ଡାଇରେକ୍ଟର ଫାର୍ମ ଦାୟିତ୍ୱରେ ରହିଲେ ଏବଂ ଈଶ୍ୱର ମହାପାତ୍ର ଫାର୍ମ ମ୍ୟାନେଜର ଥିଲେ ।

ତା ୧.୫.୧୯୫୦ ରେ ନନା ମରିଗଲେ । ବର୍ଷକ ପରେ ମୋର

ଉପର ଭାଇ କୈଳାସ ଚନ୍ଦ୍ର ମହାପାତ୍ର ଚାଲିଗଲେ । ୧୯୫୩ ବେଳକୁ ବୋଉ ମରିଗଲା । ପରେ ପରେ ସାନ ବାପା କବିରାଜ ବାଞ୍ଛାନିଧି ମହାପାତ୍ର ୧୯୫୩ ମସିହାରେ ଦେହାନ୍ତ ହେଲା । ଏହିସବୁ ଦୁଃଖରେ ମଧ୍ୟ ମୁଁ ଫାର୍ମ କାର୍ଯ୍ୟରେ ଅବହେଳା କରେ ନାହିଁ । ଠିକ୍ ସମୟରେ ଫାର୍ମ କାର୍ଯ୍ୟରେ ଯୋଗଦିଏ । ଫାର୍ମରେ ସୁଗାରକେନ୍ (ଆଖୁ ବିଭାଗ) ଏଣ୍ଟମଲଜି ବିଭାଗ, ବଟାନିକାଲ ବିଭାଗ, ସାଧାରଣ ବିଭାଗ, ହର୍ଟିକଲଚର ବିଭାଗ କାର୍ଯ୍ୟ କରନ୍ତି । ସେତେବେଳେ ସବୁ ଅଫିସର ମାନଙ୍କ ମଧ୍ୟରେ ସଦଭାବ ଥାଏ । ପ୍ରତି ମାସରେ ଅଫିସର ଓଭରସିୟର ମାନଙ୍କର ବୈଠକ ହୁଏ, ଭୋଜି ହୁଏ । ମୁଁ ସ୍ଥାନୀୟ ଲୋକ ହୋଇଥିବାରୁ ଭୋଜି ଦାୟିତ୍ୱ ପୁରାପୁରି ମୋ ଉପରେ ପଡ଼େ ।

ଭୁବନେଶ୍ୱରରେ ଡାଲମିଆ ଧର୍ମଶାଳା ୧୯୨୦ରେ ତିଆରି ହୋଇଥିଲା । ଏହି ଧର୍ମଶାଳା କଲିକତାର ଦୁଇଜଣ ସେଠ, ବିଶେଶ୍ୱରଲାଲ୍ ଓ ହରଗୋବିନ୍ଦ ଲାଲ ଏହି ଧର୍ମଶାଳାର ତିଆରି କରିଥିଲେ । କିନ୍ତୁ ମୋ ନନା ଗୋପୀନାଥ ମହାପାତ୍ର ଧର୍ମଶାଳା ପାଇଁ ଲିଙ୍ଗରାଜ ମନ୍ଦିର କମିଟିରୁ (ସେତେବେଳେ ଏଣ୍ଡାମେଣ୍ଟ ବିଭାଗ ନଥିଲା । ପୁରୀ ଜିଲ୍ଲା ଜଜ୍‌ଙ୍କ ଅଧିନରେ ଗୋଟେ ସ୍ଥାୟୀ କମିଟି ଥିଲା) ଜାଗା ଆଣିବା, ଧର୍ମଶାଳା ପଛପଟେ ଥିବା ବଗିଚା ପାଇଁ ଜାଗା କିଣିବା ଓ ଧର୍ମଶାଳା ତିଆରିର ସମସ୍ତ ଦାୟିତ୍ୱ ବୁଝୁଥିଲେ । ଏହି ଧର୍ମଶାଳା ତିଆରି ପରେ ସାକ୍ଷୀଗୋପାଳ ଚନ୍ଦନ ପୋଖରୀ ଉପରେ ଥିବା ଧର୍ମଶାଳାର ଦାୟିତ୍ୱ ନେଇ ତିଆରି କରିଥିଲେ । ନନା ମରିବାର କିଛିବର୍ଷ ପୂର୍ବରୁ ସେଠ ଦୁଇଜଣ (ଯେଉଁମାନେ ଧର୍ମଶାଳା କରିଥିଲେ) ଙ୍କର ଦେହାନ୍ତ ହେଲା । ତାଙ୍କ ପିଲାମାନଙ୍କ ମଧ୍ୟରେ ଧର୍ମଶାଳା ବଣ୍ଟା ହୋଇଗଲା । ନନା କେବଳ ଭୁବନେଶ୍ୱର ଧର୍ମଶାଳା ବୁଝିଲେ । ତା ୧.୫.୧୯୫୦ ରେ ନନାଙ୍କ ମୃତ୍ୟୁପରେ ମୋର ଉପର ଭାଇ କୈଳାସ ଚନ୍ଦ୍ର ମହାପାତ୍ର ଦୁଇବର୍ଷ ବୁଝାସୁଝା କରିବା ପରେ, ଚାଲିଗଲେ । ତେଣୁ ମୋ ଉପରେ ଧର୍ମଶାଳା ଦାୟିତ୍ୱ ପଡ଼ିଲା । ମୁଁ ତ ଚାକିରି କରିଥିଲି । ତେଣୁ ମୋର ବଡ଼ ଭିଣୋଇ ବିହାରୀ ଖୁଣ୍ଟିଆଙ୍କୁ ମ୍ୟାନେଜର ରଖି ବୁଝିଲି । ସେ ବି ବେଶି ଦିନ ବୁଝିଲେ ନାହିଁ । ପରେ ଭିଣୋଇଙ୍କର ମଧ୍ୟ ଦେହାନ୍ତ ହୋଇଗଲା । ଅନ୍ୟଲୋକ ମ୍ୟାନେଜର

ରଖି ବୁଝି ଆସୁଛି । ୧୯୫୩ ମସିହାରେ କଲିକତା ଯାଇ ଯାହା ଦେଖିଲି ସେମାନେ ଧର୍ମଶାଳା ଖର୍ଚ୍ଚ ଦେବାକୁ ସକ୍ଷମ ନୁହନ୍ତି । ସେତେବେଳେ ଧର୍ମଶାଳାର ମାଲିକ ନାରାୟଣ ଦାସ ଓ ରାମଜୀ ଦାସ । ସେମାନଙ୍କର ସେପରି ବ୍ୟବସାୟ ନଥିଲା । ତେଣୁ ତାଙ୍କର ମା ଦୁର୍ଗାବାଈ ମୋତେ କହିଲେ ଧର୍ମଶାଳାର ସାମନା ପଟ ଘର ଭଡ଼ାଦେଇ ଧର୍ମଶାଳା ଚଳାଇବାକୁ । ମଝିରେ ମଝିରେ କିଛି ସାହାଯ୍ୟ କରିବାକୁ କହିଲେ । କିନ୍ତୁ କିଛି ସାହାଯ୍ୟ କରି ପାରିଲେ ନାହିଁ । ମୋତେ ଗୋଟେ ରେଜିଷ୍ଟ୍ରି କ୍ଷମତାପତ୍ର ଦେଲେ । ଧର୍ମଶାଳା ଯେତେଯେତେ ପୁରୁଣା ହେଲା ତାର ମରାମତି ଖର୍ଚ୍ଚ ବଢ଼ିଗଲା । ଘରଗୁଡିକ ପୁରୁଣା କାଳିଆ କଡି ବର୍ଗାର ଛାତ ହୋଇଥିବାରୁ ଯେତେବେଳେ ଯେଉଁ କଡ଼ି ବରଗା ନଷ୍ଟ ହେଇ ଯାଉଛି ତାକୁ ବ୍ଦଳେଇ କରିବାକୁ ହେଉଛି । ଏକତାଲା ଦୋତାଲା ଛାତ ଖରାପ ହୋଇଯିବାରୁ ଅଧିକାଂଶ ଘରେ ପାଣି ହେଲା । ଛାତ ଭାଙ୍ଗି ନୂଆ ଛାତ କରିବା ସମ୍ଭବ ନୁହେଁ । ତେଣୁ ଛାତ ଉପରେ ସରୁ ରଡ଼ (୬ ଏମ୍.ଏମ୍) ଦେଇ ୩ ଇଞ୍ଚର ଛାତ କରିଦେଲି । ତଳ ଘର ପଥର ଚଟାଣ ଏବଂ ଏକତାଲା ଦୋତାଲା ଘର ଗୁଡିକ ଚୂନ ମେଝିଆ ହୋଇଥିବାରୁ ସିମେଣ୍ଟ କଂକ୍ରିଟ୍‌ର ଆସ୍ତେ ଆସ୍ତେ ମେଝିଆ କରି ଦେଲି । ଏଥିପାଇଁ ମୋ ପୁଅ ରବୀନ୍ଦ୍ର କୁମାର ମହାପାତ୍ର ରଡ଼ ସିମେଣ୍ଟ ସାହାଯ୍ୟ କଲା । ଜଣେ ମେନେଜର, ୩ଜଣ ଚାକର ଏବଂ ଜଣେ ମେହେନ୍ତରର ଦରମାଦେବା, ଇଲେକ୍ଟ୍ରି ବିଲ୍ ଦେଇ ସମୟେ ସମୟେ ଧର୍ମଶାଳା ମରାମତି କରିବାରେ ଯାହା ଖର୍ଚ୍ଚ ହେଲା ଧର୍ମଶାଳାର ଆୟରେ ଚଳାଇବା ସମ୍ଭବ ହେଲାନାହିଁ । ଧର୍ମଶାଳା ବାରଣ୍ଡା ଗୁଡିକ ୮ ଫୁଟ୍ ଚଉଡ଼ା ହୋଇଥିବାରୁ କଣଘର ମାନଙ୍କର ବାରଣ୍ଡାରେ ଗାଧୁଆଘର ପାଇଖାନା କରି ଦେଲି । ଏ ଘର ମାନଙ୍କରୁ ଅଧିକା ଆୟ ହେଲା । ବର୍ତ୍ତମାନ ଆଉ ସେପରି ଅଭାବ ହେଉନାହିଁ ।

ତା ୨୮।୧୦।୧୯୫୭ ବେଳକୁ ସୁପରଭାଇଜର ପ୍ରମୋସନ ପାଇ ମୁଁ ସାକ୍ଷୀଗୋପାଳ ବ୍ଲକ୍‌ରେ କୃଷି ସଂପ୍ରସାରଣ ଅଫିସର (A.E.O.) ଭାବେ ଯୋଗଦେଲି । ଏମ୍.ଜେ.ଅଲ୍ଲି ବିଡିଓ ଭାବେ ଯୋଗଦେଲେ । ଅସ୍ଥାୟୀ ଭାବେ ଚନ୍ଦନ ପୋଖରୀ ସାମ୍‌ନାରେ ସାକ୍ଷୀଗୋପାଳ ସେବକଙ୍କର ନିଯୋଗ ଘରେ

ଅଫିସ ହେଲା । ନିୟମ ଅନୁସାରେ ସରକାରୀ ଜାଗାରେ ବ୍ଲକ୍ ଅଫିସ୍ ହେବା କଥା । ସାକ୍ଷୀଗୋପାଳ ଗୁଆ ଫାର୍ମ ପାଖରେ ସରକାରୀ ଜାଗା ଥିଲା । କିନ୍ତୁ ଏହା ସାକ୍ଷୀଗୋପାଳ ଠାରୁ ୪/୫ କିଲୋମିଟର ଦୂର । ସାକ୍ଷୀଗୋପାଳ କୃଷି ଫାର୍ମ ପାଖରେ ଜଗନ୍ନାଥ ସଡ଼କ ପୂର୍ବପଟେ କିଛି ସରକାରୀ ଜାଗା ଥିଲା । ଏହା ସାକ୍ଷୀଗୋପାଳ ବଜାର ଠାରୁ ଗୋଟେ କିଲୋମିଟର ଦୂର । କିନ୍ତୁ ସେହି ସରକାରୀ ଜାଗା ସାମ୍ନାରେ ରୋଡକୁ ଲାଗି ସତ୍ୟବାଦୀ ହୋତାଙ୍କର କିଛି ଧାନ ଜମିଥିଲା । ସେ ଜଣେ ବଦାନ୍ୟ ବ୍ୟକ୍ତି ଏବଂ ପୂର୍ବରୁ ଜମିଦାର ଥିଲେ । ମୋତେ ଭାରି ଭଲ ପାଆନ୍ତି । ମୁଁ ତାଙ୍କୁ ଅନୁରୋଧ କଲି ସେ ବିନା ମୂଲ୍ୟରେ ବ୍ଲକ୍ ଅଫିସ୍ ପାଇଁ ଜମି ଦାନ କଲେ ଏବଂ ସେହି ଜାଗାରେ ବ୍ଲକ୍ ଅଫିସ୍ କ୍ୱାର୍ଟର୍ ତିଆରି ହେଲା । ଶୁଣିଥିଲି ପୂର୍ବତନ ମନ୍ତ୍ରୀ ଏବଂ 'ସମାଜ'ର ପୂର୍ବତନ ସମ୍ପାଦକ ପଣ୍ଡିତ ୰ ଲିଙ୍ଗରାଜ ମିଶ୍ରଙ୍କ ଅନୁରୋଧରେ ସାକ୍ଷୀଗୋପାଳ ଡାକ୍ତରଖାନା ପାଇଁ ସତ୍ୟବାଦୀ ହୋତା ଜମି ଦାନ କରିଥିଲେ । ସାକ୍ଷୀଗୋପାଳ ନୂଆହୋଇ ବ୍ଲକ୍ ଅଫିସ ହୋଇଥିବାରୁ ବ୍ଲକ୍‌କୁ ଓଡ଼ିଶା ସରକାରଙ୍କ ଡିପାର୍ଟମେଣ୍ଟର ସବୁ ସରକୁଲାର ଆସେ । ବି.ଡି.ଓ. ସବୁ ପଢ଼ନ୍ତି ଏବଂ ମୋତେ ପାଖରେ ବସାଇ ସବୁ ପଢ଼ିବାକୁ ଦିଅନ୍ତି । ବ୍ଲକ୍ ଚାକିରିରେ ଏହା ମୋତେ ବହୁତ ସାହାଯ୍ୟ କଲା । ସାକ୍ଷୀଗୋପାଳରେ ଯୋଗଦେବା ପରେ ମୁଁ ଜାଣିପାରିଲି ଯେ ଗୋପବନ୍ଧୁଙ୍କ ଜନ୍ମସ୍ଥାନ ସୁଆଣ୍ଡୋ ସାକ୍ଷୀଗୋପାଳ ବ୍ଲକ୍ ଅଧିନରେ । ଦିନେ ସୁଆଣ୍ଡୋ ଗଲି ଗୋପବନ୍ଧୁଙ୍କ ଘର ଦେଖିଲି । ମନେ ମନେ ମୁଣ୍ଡିଆ ମାରିଲି । କିଛି ସମୟ ତାଙ୍କ ଦାଣ୍ଡ ବାରଣ୍ଡାରେ ବସିଲି । ଗୋପବନ୍ଧୁଙ୍କ ନାତି (ନାଁ ମନେପଡୁନାହିଁ) ମୋତେ ପଇଡ ଆଣି ପିଇବାକୁ ଦେଲେ । ସେଦିନ ମୋ ମନରେ ଯେଉଁ ଆନନ୍ଦ ୫୫ ବର୍ଷପରେ ମଧ୍ୟ ଆଜି ମୋ ମନରୁ ଯାଉନାହିଁ ।

ନୂଆ ହୋଇ ବ୍ଲକ୍ ଆରମ୍ଭ ହୋଇଥିଲା । ମୁଁ ମଧ୍ୟ ନୂଆ ହୋଇ ବ୍ଲକ୍‌ରେ ଯୋଗଦେଇଥିଲି । ତେଣୁ ମୋର ବ୍ଲକ୍‌ରେ କଣ ସବୁ କରିବାକୁ ହେବ ଆସ୍ତେ ଆସ୍ତେ ବୁଝିନେଲି । ଏହି ସମୟରେ ପୁରୀ ଜିଲ୍ଲାର ଜିଲା କୃଷି ଅଫିସର କୃଷ୍ଣଚନ୍ଦ୍ର ମହାପାତ୍ର । ସେ ମୋତେ ଆଗରୁ ଭୁବନେଶ୍ୱର ଫାର୍ମରେ ଜାଣିଥିଲେ । ମଝିରେ ମଝିରେ ଆସି ମୋତେ ସବୁ ବୁଝାଇଦେଲେ । କଣାସ ଏରିଆ ସାକ୍ଷୀଗୋପାଳ

ବ୍ଲକ୍ ଅଧିନରେ ଥିଲା । ପ୍ରତି ପଞ୍ଚାୟତରେ ଜଣେ ଜଣେ ଗ୍ରାମସେବକଙ୍କ ଦାୟିତ୍ୱରେ ଥାନ୍ତି । ମୁଁ ସକାଳ ସାତଟା ମଧ୍ୟରେ ମୋ ନିତ୍ୟକର୍ମ ସାରି ଦୁଇ ତିନିଟା ପଞ୍ଚାୟତ ବୁଲି ସରପଞ୍ଚମାନଙ୍କୁ ଦେଖାକରି ଗ୍ରାମସେବକଙ୍କ ଜରିଆରେ ଉନ୍ନତ ଧାନ, ଆଳୁ, ଧନିଚା ଚାଷ ପ୍ରଭୃତି କରାଇଲି । ଜିଲା କୃଷି ଅଫିସର କୃଷ୍ଣ ବାବୁ ମଝିରେ ମଝିରେ ବ୍ଲକ୍ ପରିଦର୍ଶନରେ ଆସିଥାନ୍ତି । ସେ ମୋତେ ଉପଦେଶ ଦେଲେ ବ୍ଲକ୍ ଅଧିନରେ ଥିବା ଜଗନ୍ନାଥ ସଡ଼କ କଡରେ ଯେଉଁସବୁ ପଞ୍ଚାୟତ ଅଛି ସେହି ପଞ୍ଚାୟତ ମାନଙ୍କ ଉପରେ ବେଶୀ ଧ୍ୟାନ ଦିଅ । ଯେଉଁ ଅଫିସର ମାନେ ବ୍ଲକ୍ ପରିଦର୍ଶନରେ ଆସିବେ ସେମାନେ ଭିତର ପଞ୍ଚାୟତକୁ ଯିବେ ନାହିଁ । ସେତେବେଳେ ଓଡ଼ିଶାର ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ ଲାଲ୍‌ବିହାରୀ ଦାସ ବ୍ଲକ୍‌ର ସଭାପତି ଥିଲେ । ସେ ଗୋପବନ୍ଧୁ ଦାସଙ୍କ ସମୟର ଜଣେ ପୁରାତନ କଂଗ୍ରେସ କର୍ମୀ । ତାଙ୍କର ସାହାଯ୍ୟ ନେଲି । ଏହାଛଡ଼ା ବୀରରାମଚନ୍ଦ୍ରପୁର, ବାହୁଆ, ଶ୍ରୀରାମଚନ୍ଦ୍ରପୁର ଭଲ ଭଲ ଚାଷୀଙ୍କୁ ଧରି ଉନ୍ନତ ଚାଷକାମ କରାଇଲି । ବ୍ଲକ୍ ପଞ୍ଚାୟତ ମାନଙ୍କରେ କୃଷିମେଳା କରିବାକୁ ପଡ଼େ । ପ୍ରଥମେ ଶ୍ରୀରାମଚନ୍ଦ୍ରପୁର ପଞ୍ଚାୟତରେ ମୂଳଅଲସା ଗ୍ରାମରେ ଗୋଟିଏ ବଡ଼ ଚାଷୀମେଳା କରିବାକୁ ହେଲା । ମୁଁ ଜାଣିଲି ଏ ମେଳାରେ ନଡ଼ିଆ ଚାଷ ଉପରେ ବହୁତ ପ୍ରଶ୍ନ ପଚାରିବେ । ମୋର ବନ୍ଧୁ ହୃଷୀକେଶ ମାନ୍‌ଧାତା ସତ୍ୟବାଦୀ ନଡ଼ିଆ ଗବେଷଣା କେନ୍ଦ୍ରର ମେନେଜର ଥିଲେ । ତାଙ୍କ ଠାରୁ ନଡ଼ିଆ ଚାଷ ଉପରେ ବିଷଦ୍‌ଭାବେ ନୋଟ କଲି । ମୋତେ ନଡ଼ିଆ ଚାଷ ଉପରେ ଚାଷୀମାନେ ବହୁତ କଥା ପଚାରିଲେ । ମୁଁ ଯାହା ନଡ଼ିଆ ଚାଷ ଉପରେ କହିଲି ତାଙ୍କ ମନକୁ ପାଇଲା । କଥାରେ ଅଛି–First Impression last long ତେଣୁ ସାକ୍ଷୀଗୋପାଳ ଏରିଆରେ ମୋର ତିନିବର୍ଷ ରହଣି ମଧ୍ୟରେ ଯେତେଗୁଡିଏ ଚାଷୀମେଳା କଲି ସବୁଠାରେ ମୁଁ ସୁନାମର ସହିତ ଚାଷୀ ମେଳା କଲି । ମୁଁ ଯେଉଁ ପଞ୍ଚାୟତକୁ ଚାଷୀମେଳା କରିବାକୁ ଯାଏ, ସେ ପଞ୍ଚାୟତର ଚାଷ ବିଷୟରେ ସବୁ ଆଗରୁ ବୁଝିକରି ଯାଇଥାଏ ।

ପ୍ରତିବର୍ଷ ବ୍ଲକ୍‌ର ଚାଷୀମାନଙ୍କୁ ତାଙ୍କର ଉନ୍ନତ ଚାଷପାଇଁ ବ୍ଲକ୍ ତରଫରୁ ପୁରସ୍କାର ଦିଆଯାଏ । ମୁଁ ଅନ୍ୟାନ୍ୟ ଜିନିଷ ଦେବା ଅପେକ୍ଷା ଫାର୍ମର

ଉନ୍ନତ ନଡ଼ିଆ ଚାରା, ଗୁଆଚାରା ଦେଲି । ଚାଷୀମାନେ ଭାରି ଖୁସିହେଲେ ।

ମୁଁ ସାକ୍ଷୀଗୋପାଳ ବ୍ଲକ୍‌ରେ ଯୋଗ ଦେବା ବେଳେ ପଣ୍ଡିତ ନୀଳକଣ୍ଠ ଦାସ ଓଡ଼ିଶା ବିଧାନସଭାର ବାଚସ୍ପତି ଥିଲେ । ତାଙ୍କ ଘର ଶ୍ରୀରାମଚନ୍ଦ୍ରପୁର । ସେ ଘରକୁ ଆସିଲେ । ମୁଁ ତାଙ୍କୁ ଦେଖାକରି ମୋର ପରିଚୟ ଦେଲି । ସେ ମୋର ବଡ଼ଭାଇନା କେଦାରନାଥ ମହାପାତ୍ରଙ୍କୁ ଭଲପାନ୍ତି । ତେଣୁ ମୋତେ କହିଲେ ଯାହା ସୁବିଧା ଅସୁବିଧା ହେଲେ ମୋତେ କହିବୁ । ତାଙ୍କ ସ୍ତ୍ରୀଙ୍କୁ ମୋତେ ଚିହ୍ନାଇ ଦେଲେ । ଥରେ କଣାସରେ ଗୋଟେ ବ୍ଲକ୍ ତରଫରୁ ସଭାକରି ତାଙ୍କୁ ଡାକିଥିଲୁ । ଫକୀର ହରିଚନ୍ଦନ କଣାସ ମାଇନର ସ୍କୁଲର ହେଡମାଷ୍ଟର ଥାନ୍ତି । ତାଙ୍କ ସଙ୍ଗେ ମୋର ବନ୍ଧୁତା ଥିଲା । ଫକୀର ବାବୁ (ଓଡ଼ିଶାର ପୂର୍ବତନ ମନ୍ତ୍ରୀ ପ୍ରସାଦ ହରିଚନ୍ଦନଙ୍କ ବାପା) ସେ ମିଟିଙ୍ଗ ଯୋଗାଡ଼ କରିଥିଲେ । ନଅବିଶା ମାଛ (ପ୍ରାୟ ୧୮ କିଲୋ) ଆମମାନଙ୍କ ପାଇଁ କଣାସ ଡାକ ବଙ୍ଗଳାରେ ରୋଷେଇ ହୋଇଥିଲା । ଶୁଣିଥିଲି ପଣ୍ଡିତ ମହାଶୟ ବହୁତ ମାଛ ଖାଆନ୍ତି । ସେହିଠାରେ ଦେଖିଲି ପ୍ରାୟ ପାଞ୍ଚ କିଲୋ ମାଛ ପଣ୍ଡିତ ମହାଶୟ ଖାଇଲେ ।

ସାକ୍ଷୀଗୋପାଳ ବ୍ଲକ୍ ତିନିବର୍ଷ ଚାକିରି ଭିତରେ ଗୋଟେ ବଡ଼ଘଟଣା ହେଲା । ଗବକୁଣ୍ଡ ପାଖରେ ଭାର୍ଗବୀ ନଦୀ କୂଳରେ (ସ୍କୁଲ ନାଁ ମନେ ପଡୁନାହିଁ) ହାଇସ୍କୁଲ ହେଡମାଷ୍ଟର ସାର ବ୍ୟବହାର ବିରୁଦ୍ଧରେ କେତେକ ମାସିକ ପତ୍ରିକା ଓ 'ନବଭାରତ'ରେ ଲେଖାଲେଖି କରୁଥିଲେ । କାରଣ ସେ ଏରିଆର ଆଳୁଚାଷୀମାନେ ବିଲରେ ଖତ ନଦେଇ ଖାଲି ଆମୋନିଆ ସାର ଦେବାଦ୍ୱାରା ଦୁଇତିନିବର୍ଷ ଆଳୁ ଚାଷ କଲାପରେ ବିଲ ସବୁ ଖାରି ମାରିଯାଏ । ହେଡମାଷ୍ଟର ମହାଶୟ ସେଠାକାର ବଡ଼ ବଡ଼ ଚାଷୀମାନଙ୍କୁ ଡାକି ସାର ବ୍ୟବହାର ବିରୁଦ୍ଧରେ ଗୋଟେ ମିଟିଙ୍ଗ ଡାକିଥିଲେ । ଖବର ପାଇ ମୁଁ ସେ ସଭାକୁ ଯାଇଥିଲି । ମୁଁ ସାର ବ୍ୟବହାର ବିଷୟରେ ବୁଝାଇଦେଲି । ସମସ୍ତେ ଭାରି ଖୁସିହୋଇଗଲେ । ଆଗ ବିଲରେ ଖତ ଦେଇ ପରେ ସାର ବ୍ୟବହାର କରିବାକୁ କହିଲି । ତା ୨୬.୧୧.୫୯ ମସିହା ଡିସେମ୍ବର ମାସରେ ମୋତେ ନିମାପଡ଼ା ବ୍ଲକ୍‌କୁ ବଦଳି ହୋଇ ଯିବାକୁ ଅର୍ଡର ଆସିଲା । ମୁଁ ଜାଣେ ନାହିଁ ନିମାପଡ଼ା ଏରିଆର କମ୍ୟୁନିଷ୍ଟ ମାନେ ବିଡିଓ ଏବଂ ଏଇଓ (କୃଷି ସଂପ୍ରସାରଣ ଅଫିସ)

ବଦଳି ଦାବି କରି ବ୍ଲକ୍ ଅଫିସ ଘେରାଉ କରିଥିଲେ ଏବଂ ତାଙ୍କର ବଦଳି ଅର୍ଡର ହୋଇଥିଲା । ପରେ ନଯିବା ପାଇଁ ପଣ୍ଡିତ ନୀଳକଣ୍ଠ ଦାସଙ୍କୁ କହିଲି । କିଛି ଫଳ ହେଲା ନାହିଁ । ପୁରୀ କଲେକ୍ଟର ଉଦୟନାଥ ପଟ୍ଟନାୟକ, ଆଇ.ଏ.ଏସ୍ ପଣ୍ଡିତଙ୍କୁ କହିଲେ ୬ ମାସ ପରେ ମୋତେ ସାକ୍ଷୀଗୋପାଳ ବଦଳି କରିଦେବେ । ନିମାପଡ଼ାରେ ମୋର କଟକ ଭିକ୍ଟୋରିଆ ସ୍କୁଲ ସହପାଠୀ ଗୌର ରାମାନୁଜ ଦାଶ ସ୍କେଶାଲା ବ୍ରାଞ୍ଚ ଇନିସ୍‌ପେକ୍ଟର ଏବଂ ବନ୍ଧୁ ବିଦ୍ୟାଧର ଷଡଙ୍ଗୀ କାକଟପୁର ଥାନା ସବ୍ ଇନିସ୍‌ପେକ୍ଟର ଥିଲେ । (କାକଟପୁର ଥାନା ନିମାପଡ଼ା ସରକଲ୍ ଇନିସ୍‌ପେକ୍ଟର ଅଧିନରେ ଥିଲା) । ସେମାନେ କହିଲେ ଆମେ ଅଛୁ ତୋର କିଛି ଅସୁବିଧା ହେବନାହିଁ । ବାଧ୍ୟ ହୋଇ ନିମାପଡ଼ା ବ୍ଲକ୍‌ରେ ଯୋଗଦେଲି । ତେଣୁ ୧୫ ଦିନ ଖଣ୍ଡେ ଅଫିସରେ ରହିବାକୁ ହେଲା । ସେତେବେଳେ ବ୍ଲକ୍‌କୁ ବହୁତ ଦୁଧ ପାଉଡର ଆସୁଥିଲା । ଅଫିସ ବାରଣ୍ଡାରେ ଓ ଗୋଦାମ ଘର ଦୁଧ ପାଉଡରରେ ଭରି ରହୁଥିଲା । ମୁଁ ଅଫିସରେ ରହୁଥିବା ମଧ୍ୟରେ ଦୁଧ ପାଉଡର ଚୋରି ହେଲା । ବିଡ଼ିଓ ଥାନାରେ ଏତେଲାଦେଲେ ସାକ୍ଷୀଗୋପାଳରୁ ଜଣେ ସବଇନ୍ସପେକ୍ଟର ନିମାପଡ଼ା ବଦଳି ହୋଇ ଆସିଥିଲେ । ସେ ଇନକ୍ୱାରି କରିବାକୁ ଆସି ମୋତେ କହିଲେ ତୁମେ ଏଠାରେ ରହୁଛ କିପରି ଜାଣିପାରୁନାହିଁ । ଦୁଧ ପାଉଡର ଚୋରି ହେଉଛି । ମୁଁ କହିଲି ବ୍ଲକ୍ ଅଫିସ୍ ଜଗିବାକୁ ଚଉକିଦାର ଅଛି । ମୁଁ ରାତିବାରଟା ପର୍ଯ୍ୟନ୍ତ ପଢ଼ାପଢ଼ି କରି ଶୋଇଯାଏ । ମୋତେ କହିଲେ ତୁମେ ସାକ୍ଷୀଗୋପାଳ ବ୍ଲକ୍‌ରୁ ଆସିଛ ସଠାରେ ବ୍ଲକ୍ ଅଫିସ୍‌ର ବହୁତ ଦୁଧ ପାଉଡର ଚୋରି ହେଉଛି । ମୁଁ କହିଲି ମୁଁ ସାକ୍ଷୀଗୋପାଳ ବ୍ଲକ୍‌ରେ ଦୁଧପାଉଡର ଚୋରି ହେବାର ଜାଣେ ନାହିଁ କି କେବେ ଥାନାରେ ସାକ୍ଷୀଗୋପାଳ ବ୍ଲକ୍ ତରଫରୁ ଡାଇରି ଦିଆଯାଇନାହିଁ । ସେ ମୋ ବିରୁଦ୍ଧରେ ଗୋଟେ ଲମ୍ବାଚଉଡ଼ା ରିପୋର୍ଟ ଇନସ୍‌ପେକ୍ଟରଙ୍କୁ ଦେଲେ । ଇନ୍‌ସପେକ୍ଟର ଇନକ୍ୱାରି କରି ମୋର ପରିଚୟ ପାଇଲେ । ସେ ମହାଶୟ ବଡ ଭାଇନାଙ୍କ ସାଙ୍ଗ । ଏକାଠି ଖୋର୍ଦ୍ଧାରେ ପଢୁଥିଲେ । ଆମଘରକୁ ବହୁତ ଥର ଆସିଛନ୍ତି । ମୋତେ ଥାନାକୁ ଡାକି ସବୁ କହିଲେ । ସେ ରିପୋର୍ଟ ଚିରିଦେଲେ ଓ ସେ ସବ୍‌ଇନିସ୍‌ପେକ୍ଟରଙ୍କୁ ଗାଳିଦେଲେ । ଏହାପରେ ଥାନାରେ

ପ୍ରତିମାସରେ ଭୋଜି ହୁଏ । ମୋତେ ସବୁ ଭୋଜିରେ ଯୋଗଦେବାକୁ ଡାକନ୍ତି । ବିପଦ କଟିଗଲା । ଏହାପରେ ମୁଁ ନିମାପଡ଼ା ବଜାର ଅମଲାପଡ଼ାରେ ଖଣ୍ଡେ ଘର ଭଡ଼ାନେଇ ରହିଲି । ମୋ ବସାଘରଟି ନିମାପଡ଼ା କମ୍ୟୁନିଷ୍ଟ ଅଫିସ୍ ପାଖରେ ଥିଲା । ମୋ ବଡ଼ଭାଇନାଙ୍କ ସାଙ୍ଗ ଗୋକୁଳ ରାୟଚୂଡାମଣି ସେ ଅଫିସ୍‌ରେ ରହୁଥାନ୍ତି । ନିମାପଡ଼ାର କମ୍ୟୁନିଷ୍ଟ ଲିଡର ମୋହନ ଦାଶ, ଲିଙ୍ଗରାଜ ଦାଶଙ୍କ ସଙ୍ଗେ ମୋର ଜଣାଶୁଣା ଥିଲା । ପ୍ରତି ମାସରେ ମୋତେ ଟ. ୧୦ ଚାନ୍ଦା ଦେବାକୁ ପଡ଼ିଲା ।

## ବ୍ଲକ୍ ଅଫିସ କଥା :-

ଅଫିସ୍ ର ତିନିଜଣ ପିଅନ ନିମାପଡ଼ା ଟାଉନର । ନିମାପଡ଼ା ଯିବାପୂର୍ବରୁ ଯେଉଁ ବ୍ଲକ୍ ଅଫିସ୍ କମ୍ୟୁନିଷ୍ଟମାନେ ଘେରାଉ ହୋଇଥିଲା ସେଥିରେ ଏହି ପିଅନ ମାନଙ୍କର ପୁରା ହାତ ଥିଲା ବୋଲି ଶୁଣିଲି । ମୁଁ ଅଫିସକୁ ଯାଇ ଦେଖିଲି ଏମାନେ ଅଫିସ ଚେୟାର ଦଖଲ କରିଛନ୍ତି । ବଡ ଅନିଚ୍ଛାରେ ଚେୟାରରୁ ଉଠନ୍ତି । ମୁଁ ତାଙ୍କୁ କିଛ କହିବା ଠିକ୍ ମନେ କଲିନାହିଁ । ହେଡକ୍ଲର୍କ ବଂଶୀଧର ମହାନ୍ତିଙ୍କୁ କହିଲି ତୁମେ ବିଡ଼ିଓଙ୍କୁ କହି ଖଣ୍ଡେ ମସିଣା କିଣିବ ଆମେ ବସି ଅଫିସ କାମ କରିବୁ । ତାପର ଦିନ ସମସ୍ୟା ସମାଧାନ ହୋଇଗଲା । ଆମ ବସିବା ପାଇଁ ଥିବା ଚେୟାରରେ ପିଅନ ବସିଲେ ନାହିଁ । ମୁଁ ପଞ୍ଚାୟତ ସେକ୍ରେଟେରି ମାନଙ୍କ ଠାରୁ ଶୁଣିଲି ବ୍ଲକ୍ ଅଫିସ୍‌ରୁ ଯେଉଁସବୁ ବିହନ ଧାନ, ଗହମ ପ୍ରଭୃତି ପଞ୍ଚାୟତକୁ ଯାଏ ଜଣେ ପିଅନଙ୍କ ଭାଇଙ୍କ ଶଗଡ଼ରେ ଯାଏ । ସେ ବାଟରେ କିଛିକିଛି ବିହନ କାଢ଼ି ରଖେ । ସେଥିରୁ କିଛି (A.E.O) କୃଷି ପ୍ରସାରଣ ଅଫିସରଙ୍କୁ ଦିଏ । କେତେଦୂର ସତ୍ୟ କହିହେବ ନାହିଁ । ମୋ ପୂର୍ବରୁ ମୋର ବନ୍ଧୁ ୰ ଦିବାକର ନାୟକ ଥିଲେ ନିମାପଡ଼ା A.E.O । ମୁଁ ପଞ୍ଚାୟତ ସେକ୍ରେଟେରି ମାନଙ୍କୁ କହିଲି ତୁମେମାନେ ବ୍ଲକ୍ ଅଫିସରୁ ଶଗଡିଆକୁ ଓଜନ କରିଦେବ ଏବଂ ଓଜନ କରି ରଖିବ । ଏହା କରିବା ଦ୍ୱାରା ସେ ଶଗଡିଆ ମୋ ଉପରେ ମନେ ମନେ ରାଗିଲା । ଦିନେ ଆମ ବ୍ଲକ୍ କଲୋନିରେ ବାଡ଼ିପଟେ ଲଗାଯାଇଥିବା ପନିପରିବା ଗାଈ ପୁରାଇ ନଷ୍ଟ କଲା ଏବଂ ସ୍ତ୍ରୀଲୋକମାନେ କହିବାରୁ ତାଙ୍କୁ ଗାଳିଦେଲା । ମୁଁ ଏ କଥା କମ୍ୟୁନିଷ୍ଟ ଅଫିସ୍‌ରେ କହିଲି । ସେ

ବେହେରାକୁ କମ୍ୟୁନିଷ୍ଟ ଅଫିସକୁ ଡାକି ଦଣ୍ଡ ଦେଲେ । ସେହି ଦିନୁ ପିଅନ ବାବୁମାନଙ୍କର ମୋ ପ୍ରତି ଭୟ ହୋଇଗଲା । ନିମାପଡ଼ା ବ୍ଲକ୍‌ରେ ଚାଷୀମେଳା କରିବା କଥା । ମୋତେ ବ୍ଲକ୍‌ରେ ଅନ୍ୟ ସଂପ୍ରସାରଣ ଅଫିସର ମାନେ କହିଲେ ସବୁ ପଞ୍ଚାୟତରେ କୃଷିମେଳା ହୋଇପାରିବ, ଚାରିଛକ ଭୋଦର ପଞ୍ଚାୟତରେ ଚାଷୀମେଳା କରିବା କଷ୍ଟ । କାରଣ ସେ ଏରିଆ ଲୋକ ପୁରା କମ୍ୟୁନିଷ୍ଟ । ମୁଁ ଭୋଦର ପଞ୍ଚାୟତ ସେକ୍ରେଟେରିକୁ ଧରି ପଞ୍ଚାୟତ ଗାଁ ସବୁ ବୁଲିଲି । ପ୍ରାଚୀ ନଦୀ କୂଳରେ ଗୋଟେ ଚାଷୀଗାଁ ଠିକ୍ କଲି । (ସେ ଗାଁର ନାଁ ମନେ ପଡୁନି) । ସେ ଗ୍ରାମରେ ତିନିଦିନ ମେଳା ହେଲା । ପ୍ରଥମ ଦିନ ମୋ ସଙ୍ଗେ କେହି ସଂପ୍ରସାରଣ ଅଫିସର ଗଲେ ନାହିଁ । ମୁଁ ଯିବା ପୂର୍ବରୁ ସେ ଗ୍ରାମର ସମସ୍ତ ବିବରଣୀ-ସେ ଗାଁରେ କେତେ ଘର ଚାଷୀ ଏବଂ ଅନ୍ୟାନ୍ୟ ଜାତିର କେତେ ଲୋକ ଅଛନ୍ତି ସେ ମଉଜାରେ ଖାଲ, ମଧ୍ୟମ ଢ଼ିପ ଜମି କେତେ ଏକର ଏ ସମସ୍ତ ବିବରଣୀ ସଂଗ୍ରହ କରିଥିଲି । ବ୍ଲକ୍ ହେବା ପୂର୍ବରୁ ପ୍ରାୟ ସବୁ ପଞ୍ଚାୟତର ଗ୍ରାମମାନଙ୍କର ବିଷଦ ବିବରଣୀ ସଂଗ୍ରହ କରାଯାଇଥାଏ । ମିଟିଙ୍ଗ ଆରମ୍ଭରେ ଚାଷୀମାନେ ବହୁତ ପ୍ରଶ୍ନ ପଚାରିଲେ । ମୁଁ ତାଙ୍କ ପ୍ରଶ୍ନର ଉତ୍ତର ଦେବା ସଙ୍ଗେ ସଙ୍ଗେ ସେ ଗ୍ରାମର ବିଷଦ ବିବରଣୀ ଦେଲି । ସେଦିନ କୃଷି ମେଳାରେ ପ୍ରାୟ ଶହେ ଉପରେ ଲୋକ ହୋଇଥିଲେ । ସେମାନେ ଭାରି ଖୁସି ହୋଇଗଲେ । ପରଦିନ ବିଡ଼ିଓ ଏବଂ ଅନ୍ୟ ସଂପ୍ରସାରଣ ଅଫିସରମାନେ ଆସିଲେ । ବଡ଼ ଧୁମଧାମ୍‌ରେ ସଭା ହେଲା । ଭୋଜି ବି ହେଲା । ମୋର ନିମାପଡ଼ାରେ ରହିବା ଭିତରେ ଏପରି କୃଷିମେଳା ଅନ୍ୟ ପଞ୍ଚାୟତରେ ହୋଇନଥିଲା ।

ମୁଁ ପ୍ରତିଦିନ ସକାଳ ୭ଟାରେ ମୋର ନିତ୍ୟକର୍ମ ସାରି ଦୁଇତିନିଟା ପଞ୍ଚାୟତ ପରିଦର୍ଶନ କରି ଦିନ ଗୋଟାକ ବେଳେ ଖାଇ ଟିକିଏ ବିଶ୍ରାମ କରି ରାତିପର୍ଯ୍ୟନ୍ତ ବ୍ଲକ୍ ଅଫିସରେ ଅଫିସ୍ କାମ କରେ । ନିମାପଡ଼ା ଡାକବଙ୍ଗଳାକୁ ଲାଗି କଂଗ୍ରେସ ଅଫିସ । ଅଫିସକୁ ଲାଗି ଅଧଏକର ଧାନଜମି । ସେ ଜମିରେ କିଛି ଧନିଚା ଚାଷ କରିଥିଲି । ପୁରୀ କଲେକ୍ଟର ଏବଂ କୃଷି ବିଭାଗର ଡାଇରେକ୍ଟର ପ୍ରଭୃତି ଯେଉଁ ଅଫିସରମାନେ ବ୍ଲକ୍ ପରିଦର୍ଶନରେ ଆସନ୍ତି ସେମାନେ ସେ ଧନିଚା କିଆରି କଂଗ୍ରେସ ଅଫିସ୍‌ର ବିଲରେ ହୋଇଛି ଦେଖି

ମୋ ପ୍ରତି ତାଙ୍କର ଭଲ ଧାରଣା ହୁଏ । ୧୯୬୧ ମସିହାରେ ନଈ ବଢ଼ି ହେଲା । କୁଶଭଦ୍ରା ନଦୀ ନିମାପଡ଼ାର ପୂର୍ବପଟେ ଅବସ୍ଥିତ । ନଈରେ ଭୀଷଣ ବଢ଼ିହେଲା । ପୁରୀ ସବକଲେକ୍ଟର ଦୁର୍ଯ୍ୟୋଧନ ସ୍ୱାଇଁ ମୋ ଉପରେ ଦାୟିତ୍ୱ ଦେଲେ ରାତିରେ ନଈବନ୍ଧର ଅବସ୍ଥା ଦେଖି ପ୍ରତି ଘଣ୍ଟାରେ ଟେଲିଗ୍ରାମ କରିବାକୁ । ମୁଁ ଖଣ୍ଡେ ହାପପେଣ୍ଟ ପିନ୍ଧି ଟର୍ଚ୍ଚଲାଇଟ୍ ଧରି ଖଣ୍ଡେ ବାଡ଼ି ଧରି ନଦୀର ପଶ୍ଚିମପଟେ ବନ୍ଧରେ ବୁଲେ ଏବଂ ପ୍ରତି ଘଣ୍ଟାରେ ପୁରୀ ଟେଲିଗ୍ରାମ୍ କରେ । ନଦୀର ପୂର୍ବପଟ ବନ୍ଧରେ ସ୍ୱନାମଧନ୍ୟ କମ୍ୟୁନିଷ୍ଟ ନେତା ୰ ମୋହନ ଦାଶ ଖଣ୍ଡେ ଛତା ଲଣ୍ଠନ ଧରି ପୂର୍ବପଟ ବନ୍ଧ ଉପରେ ବୁଲନ୍ତି ଏବଂ ମୋତେ କହିଥାନ୍ତି ନଦୀ ବନ୍ଧର ଅବସ୍ଥା ମୁଁ ତାଙ୍କୁ କହିବି ସେ ମୋତେ କହିବେ । ମୁଁ ସେହି ଅନୁସାରେ ପୁରୀ ସବ୍ କଲେକ୍ଟରଙ୍କୁ ଟେଲିଗ୍ରାମ କରେ । ଆମେ ଦୁହେଁ ଯାଇ ନିମାପଡ଼ା କୁଶଭଦ୍ରା ନଦୀ ବ୍ରିଜ ଉପରେ ଭେଟାଭେଟି ହେଉ । ସବ୍‌କଲେକ୍ଟର (ଏସ୍.ଡି.ଓ) ଏବଂ ବିଡ଼ିଓଙ୍କର ମୋ ଉପରେ ପୂର୍ଣ୍ଣ ବିଶ୍ୱାସ ଥାଏ । ତେଣୁ ମୋତେ ଏ କାମ ଦେଇଥିଲେ । ମୁଁ ଏହି କାମକୁ ଗୋଟେ ବଡ଼ ସେବାମୂଳକ କାର୍ଯ୍ୟଭାବି କରୁଥିଲି । ମୁଁ ନିମାପଡ଼ାରେ ଚାକିରି କାଳ ମଧ୍ୟରେ ଦେଖିଲି ମୋହନ ଦାଶ ପ୍ରକୃତରେ ଗୋପବନ୍ଧୁ ଦାସଙ୍କର ପଟ୍ଟଶିଷ୍ୟ, ଜଣେ ସଚ୍ଚା ଦେଶସେବକ ଏବଂ କର୍ମୀ ।

ନିମାପଡ଼ାଠାରୁ ୪/୫ କିଲୋମିଟର ଦୂର, କୁଶଭଦ୍ରା ନଦୀର ପଶ୍ଚିମପଟ ବନ୍ଧରେ ବାଆଁଝାଟି ଗ୍ରାମ ନିକଟରେ ନଦୀରେ ଘାଇ ହୋଇଗଲା । ଧାନୁଆ ନଦୀ ପୂର୍ବପଟେ ଥିବା ବାମନାଳ ପଞ୍ଚାୟତ ଏବଂ କେତେଟା ପଞ୍ଚାୟତର ନିମାପଡ଼ା ବ୍ଲକ୍ ଏରିଆର ୨୦୦ ଖଣ୍ଡେ ଗ୍ରାମ ପାଣି ଘେରରେ ରହିଗଲା । ଯେଉଁଦିନ ଘାଇ ଭାଙ୍ଗିଲା ସେହି ଦିନ ୧୨ଟାରେ ଗୋଟେ ବଡ଼ ଡଙ୍ଗାରେ ଚାଉଳ, ଚୂଡ଼ା, କିରାସିନି ତେଲ ନେଇ ମୁଁ ବାହାରିଲି । ମୋ ସାଙ୍ଗରେ ବ୍ଲକ୍ ଚେୟାରମ୍ୟାନ୍ ୰ ପୂର୍ଣ୍ଣଚନ୍ଦ୍ର ସାହୁ ନିମାପଡ଼ା କମ୍ୟୁନିଷ୍ଟ ପାର୍ଟିର ସେକ୍ରେଟେରୀ ଜଗନ୍ନାଥ ମହାନ୍ତି ଓ ଜଣେ ଗ୍ରାମସେବକ ଯାଇଥିଲେ । ତିନିଦିନ ଡଙ୍ଗାରେ ଗାଁକୁ ଗାଁ ବୁଲି ବୁଲି ରିଲିଫ୍ ବାଣ୍ଟିଲୁ । ପ୍ରଥମ ଦିନ ବାମନାଳ ନିକଟ ଆମ୍ବିଳିହଣା ଗାଁରେ ପହଞ୍ଚିଲୁ ପ୍ରାୟ ଦିନ ୪ଟାରେ । ଗାଁ ଲୋକମାନେ ଆମକୁ

କହିଲେ ଆପଣମାନେ ଆଗ ଆମ୍ବିଳିହଣା ଡାକ୍ତର ଖାନାକୁ ଯାଆନ୍ତୁ । ଆମେ ଯାଇ ଦେଖିଲୁ ଜଣେ ବୁଢ଼ା ଡାକ୍ତର ଏବଂ ଜଣେ ନୂଆ ଚାକିରିରେ ଯୋଗ ଦେଇଥିବା ନର୍ସ ଡାକ୍ତରଖାନାରେ ଅଛନ୍ତି । ସେମାନେ ଡାକ୍ତରଖାନା ଘରର ନଳାରେ ମାଟି ଦେଇ ବନ୍ଦ କରୁଛନ୍ତି । ଶୁଣିଥିଲି ବାମନାଳ ଗହୀରରେ ବହୁତ ତମ୍ପସାପ, ଦେଖିଲି ନଦୀ ପାଣିରେ ଶହ ଶହ ତମ୍ପସାପ ଫେଣା ଟେକି ପହଁରୁଥାନ୍ତି । ମୁଁ କେବେ ଏତେ ତମ୍ପସାପ ଦେଖିନଥିଲି । ଭାରି ଭୟ ଲାଗୁଥାଏ । ନାଉରିଆ ମାନେ କହିଲେ ସାପମାନେ ଡଙ୍ଗାପାଖକୁଆସିବେ ନାହିଁ । ରାତିରେ ସେହି ଆମ୍ବିଳିହଣା ଗାଁରେ ଉତ୍କଳ ଭୀମ ୰ ପଦ୍ମଚରଣ ବାବୁଙ୍କ ଘରେ ରହିଲୁ । ଗାଁ ମୁଣ୍ଡରେ ପଡିଆ ଥାଏ କିନ୍ତୁ ସାପମାନେ ଆଶ୍ରୟ ନେଇଥିବେ । ଆମେ ଡଙ୍ଗାକୁ ନଦୀ ଭିତରକୁ ନେଇ ଡଙ୍ଗାରେ ଝାଡ଼ାଗଲୁ । ଏହି ରିଲିଫ ବାଣ୍ଟିବାରେ ମୁଁ କେବଳ କେଉଁ କେଉଁ ଗାଁରେ ଆମେ ନେଇଥିବା ଚୂଡ଼ା, ଚାଉଳ କିରାସିନି ଦିଆଗଲା ମୁଁ ତାଲିକା କରେ । ମୋ ସାଙ୍ଗରେ ଯାଇଥିବା ଆମ ବ୍ଲକ୍ ଚେୟାରମ୍ୟାନ ପୂର୍ଣ୍ଣବାବୁ, କମ୍ୟୁନିଷ୍ଟ ନେତା ଜଗନ୍ନାଥ ବାବୁ ପୁରାପୁରି ବାଣ୍ଟିବା ଭାର ନେଲେ । ମୋତେ ଭାରି ସୁବିଧା ହେଲା । ବ୍ଲକ୍‌କୁ ଫେରି ଆସି B.D.O.ଙ୍କୁ ସମସ୍ତ ରିପୋର୍ଟ ଦେଲି ଏବଂ ପୁରୀ କଲେକ୍ଟରଙ୍କୁ ଜଣାଇ ଦିଆଗଲା । ଏହି ରିଲିଫ୍ କାର୍ଯ୍ୟ B.D.O. ନିକୁଞ୍ଜକିଶୋର ଦାସ ଏସ୍.ଡି.ଓ (ସବ୍‌କଲେକ୍ଟର) ଙ୍କୁ ଜଣାଇ ଦେଲେ ଏବଂ କଲେକ୍ଟର ପର୍ଯ୍ୟନ୍ତ ମୋର ପ୍ରଶଂସା କରିଥିଲେ ।

ବ୍ଲକ୍‌କୁ ତ ପ୍ରାୟ ସବୁ ପ୍ରକାର ବିହନ ଚାଷୀମାନଙ୍କ ପାଇଁ ଆସେ । ଶୀତଦିନିଆ ଫୁଲ, ବନ୍ଧା କୋବି, ବିଲାତି ବାଇଗଣ, ବାଇଗଣ ମଞ୍ଜି ଆସେ । ମୋ ପାଖରେ ଜଣେ କର୍ମଠ ଗ୍ରାମସେବକ ଥିଲେ, ଭିକାରୀ ଚରଣ ପଟ୍ଟନାୟକ । ସେ କହିଲେ ଆମେ ଚାଷୀଙ୍କୁ ମଞ୍ଜି ନଦେଇ ତଳି ଦେବା । ବିଡ଼ିଓ ରାଜି ହେଲେ । ବ୍ଲକ୍ ଅଫିସ୍ ହତାରେ ତଳି ପକାଇବା ପାଇଁ ଭଲ ଜାଗା ଥିଲା । ତଳି ପକାଇ ଚାଷୀମାନଙ୍କୁ ଯୋଗାଇଲୁ । ଚାଷୀମାନେ ଅତି ଶସ୍ତାରେ କୋବି, ବାଇଗଣ, ବିଲାତି ବାଇଗଣ ତଳି ପକାଇଲେ । ସେଥିରେ ମଧ ବିହନ ପଇସା ତଳିପକା ମଜୁରି ଯାଇ କିଛି ପଇସା ଲାଭ ହେଲା । ସେହି ପଇସାରେ ବ୍ଲକ୍

ହତାରେ ସ୍ୱାଧୀନତା ଦିବସରେ, ଅଗଷ୍ଟ ପନ୍ଦରର ପତାକା ଉତ୍ତୋଳନ ପାଇଁ ଗୋଟେ ଖୁଣ୍ଟ ଓ ଚଉତରା ହୋଇଥିଲା ।

ମୋର ନିମାପଡ଼ା ଏରିଆରେ ବହୁତ ବନ୍ଧୁଘର । ମୋର ମଲାସୁର ଘର ପିଇସି ନାନୀଘର, ସଢୁଘର । ସେମାନେ ନିମାପଡ଼ା ଆସିଲେ ମୋ ପାଇଁ ପରିବା, ନଡ଼ିଆ ଆଣନ୍ତି । ଆମେତ ମୋଟେ ତିନିଜଣ ମୁଁ, ମୋ ସ୍ତ୍ରୀ ଏବଂ ମୋର ପୁଅ ରବି ବର୍ଷକର ହୋଇଥାଏ ତାକୁ ଧରିବାକୁ ୧୦ ବର୍ଷର ପିଲା ନନ୍ଦ ନାୟକ (ବର୍ତ୍ତମାନ ପର୍ଯ୍ୟନ୍ତ ଆମ ଘରେ ଅଛି ।) ତେଣୁ ମୁଁ ମୋ ପାଇଁ କିଛି ପରିବା ରଖି ବ୍ଲକ୍ କଲୋନିରେ ବାଣ୍ଟିଦିଏ । ନିମାପଡ଼ା ଏରିଆର ବିଶେଷତଃ ବଲଙ୍ଗା ପଞ୍ଚାୟତ, ପାର୍ବତୀପୁର ଏରିଆର ସରପଞ୍ଚ ଏବଂ ସେକ୍ରେଟେରିମାନେ ବଡ଼ ବଡ଼ ଚାଷୀ, ମୁଁ ଶୀତଦିନେ ବଲଙ୍ଗା ଏରିଆକୁ ହାଟଦିନ ଗଲେ ମୋ ସାଥିରେ ଯାଇଥିବା ପିଅନ ପରିବା ବୋହି ଆଣିବାକୁ ଆକ୍ରାନ୍ତ ହୁଏ । ଅଳ୍ପ କିଛି ମୁଁ ରଖେ ଅବଶିଷ୍ଟ ବ୍ଲକ୍ କଲୋନିରେ ବାଣ୍ଟିଦିଏ । ମୁଁ ସବୁ ସରପଞ୍ଚ ଏବଂ ପଞ୍ଚାୟତ ସେକ୍ରେଟେରିଙ୍କ ସଙ୍ଗେ ମିଶାମିଶି କରେ । ସେମାନଙ୍କ ମଧ୍ୟରୁ ସରପଞ୍ଚ ବା ସେକ୍ରେଟେରି ବା ଦୁଇଜଣ ଯାକ ସକାଳ ଅଫିସ୍ କାମରେ ନିମାପଡ଼ା ଆସନ୍ତି କିମ୍ବା ଦିପ୍ରହରେ ଖାଇଲାବେଳେ ଆସନ୍ତି । ମୋ ଘରେ ଚା'ଜଳଖିଆ ଦିପ୍ରହରେ ମୋ ସଙ୍ଗେ ଖାନ୍ତି । ତେଣୁ ମୁଁ ପଞ୍ଚାୟତ ପରିଦର୍ଶନରେ ଗଲେ ମୋତେ ବାଧ କରି ରାତିରେ ପଞ୍ଚାୟତ ଅଫିସ୍‌ରେ ରଖନ୍ତି ଏବଂ ଭୋଜି କରନ୍ତି । ଏହାଦ୍ୱାରା କେତେ ଜଣ ସଂପ୍ରସାରଣ ଅଫିସର ବିଶେଷତଃ କୋପରେଟିଭ ଅଫିସର ମୋ ପିଅନଠାରୁ ମୋତେ ପଞ୍ଚାୟତରେ ଏତେ ଆଦର ମିଳୁଥିବା ଖବର ଶୁଣି ତାଙ୍କ ମନରେ ଭାରି ଇର୍ଷା ହୁଏ । ମୋର ଯଦିବା ନିମାପଡ଼ା ଏରିଆରେ ବହୁତ ବନ୍ଧୁବାନ୍ଧବ ଘର ମୁଁ କେବେ ପଞ୍ଚାୟତ ଗସ୍ତରେ ଯାଇ ବନ୍ଧୁବାନ୍ଧବଙ୍କ ଘରକୁ ଯାଏ ନାହିଁ ।

ନିମାପଡ଼ା ବ୍ଲକ୍‌ରେ ଯୋଗ ଦେଲି ଏବଂ ତା ୩୦.୬.୬୨ ପର୍ଯ୍ୟନ୍ତ ପାଖାପାଖି ତିନିବର୍ଷ ରହିଲି । ଏହି ସମୟଟି ମୋର ଚାକିରି ଜୀବନରେ ସବୁଠାରୁ ଭଲ ସମୟ । ପୁରୀ କଲେକ୍ଟର ବି.ଡି.ଓ. ପାଇଁ ମୋ ନାଁ ସୁପାରିଶ କଲେ ।

୧୯୬୧ ମସିହାରେ ପଞ୍ଚାୟତରାଜ ଡିପାର୍ଟମେଣ୍ଟର ହେଡ୍ ଆସିଷ୍ଟାଣ୍ଟ ଆଚାର୍ଯ୍ୟବାବୁ ତାଙ୍କ ସ୍ତ୍ରୀଙ୍କୁ ନିମାପଡ଼ାରେ ଗ୍ରାମସେବିକାରେ ଯୋଗଦେବାପାଇଁ ଏକ ପତ୍ର ଆଣି ବିଡିଓଙ୍କୁ ଦେଲେ । ବିଡିଓ ନିକୁଞ୍ଜ ବାବୁ ତାଙ୍କୁ ମୋ ଘରେ ଖାଇବାକୁ ଡାକିବାକୁ କହିଲେ ମୁଁ ତାଙ୍କୁ ଡାକିଲି । ବ୍ଲକ୍ କ୍ୱାଟର ଭିତର ବାରେଣ୍ଡାରେ ବସିଲେ ଷ୍ଟୋରଘର ଖୋଲାଥିଲେ ସବୁ ଦେଖାଯାଏ । ମୋ ଷ୍ଟୋର ଘରେ ଚାଉଳ ବସ୍ତା (ସିମେଣ୍ଟ ବସ୍ତା) ନଡ଼ିଆ ପରିବା ଦେଖି ଏବଂ ମୁଁ ସେତେବେଳେ ଷ୍ଟିଲ ବାସନ ବ୍ୟବହାର କରୁଥିଲି (ଧର୍ମଶାଳାର ମାଲିକ ମୋତେ ଯୋଡେ ବଡ ଷ୍ଟିଲ ଥାଳି ଥାଳିଆ ଗିନା ଗିଲାସ କଲିକତାରେ ଟ. ୪୦/- ରେ କିଣାଇ ଦେଇଥିଲେ, ବର୍ତ୍ତମାନ ମଧ୍ଯ ସେ ଦୁଇସେଟ ଷ୍ଟିଲ ବାସନ ନୂଆପରି ଅଛି ।) ଏସବୁ ଦେଖି ସେ ଭାବିଲେ ନିମାପଡ଼ାରେ ବହୁତ ଉପୁରି ମିଳୁଛି । କିନ୍ତୁ ଚାଉଳ ମୋ ଘରୁ ଯାଏ । ପନିପରିବାର କଥା ଆଗରୁ କହିଛି । ସେତେବେଳେ ମୋ ଦରମା ବୋଧେ ମହଙ୍ଗା ଭତ୍ତା ମିଶାଇ ଟ ୩୦୦/- ଭିତରେ । ଆଚାର୍ଯ୍ୟ ମହାଶୟ ଧାରଣା ନେଲେ ନିମାପଡ଼ାରେ ବହୁତ ଉପୁରି ଅଛି । ତାଙ୍କ ସ୍ତ୍ରୀଙ୍କୁ ଏହି ଧାରଣା ଦେଇ ନିମାପଡ଼ା ପଠାଇଲେ ।

ସେ ଗ୍ରାମସେବିକା ମହାଶୟ ପଞ୍ଚାୟତର ମହିଳା ସମିତି ସବୁ ପରିଦର୍ଶନରେ ଯାଇ ପରିବାପତ୍ର ମାଗିଲେ । ସରପଞ୍ଚମାନେ ମୋତେ ଆସି କହିଲେ । ମୁଁ ତାଙ୍କୁ ଏପରି ମଗାମଗି କରିବାକୁ ମନାକଲି । ଏହାଛଡ଼ା ସେ ମହାଶୟା ଅଫିସ ପିଅନମାନଙ୍କ ସାହାଯ୍ୟରେ ଭୁବନେଶ୍ୱରରୁ ଯାଇଥିବା ଟ୍ରକ୍‌ରେ ବସି ଭୁବନେଶ୍ୱର ଆସନ୍ତି । ମୁଁ ଶୁଣି ପିଅନମାନଙ୍କ ଉପରେ ବିରକ୍ତ ହେଲି । କହିଲି ଟ୍ରକ୍‌ରେ ତୁମେସବୁ ଦିଦିଙ୍କୁ ଭୁବନେଶ୍ୱର ଯିବାରେ ସାହାଯ୍ୟ କରୁଛ କିନ୍ତୁ ଯଦି କିଛି ଅସୁବିଧା ହୁଏ କିଏ ଦାୟୀ ହେବ । ସେମାନେ ଦିଦିଙ୍କୁ କହିଲେ ଏବଂ ଆଉ ଟ୍ରକ୍‌ରେ ବସାଇବାକୁ ଗଲେ ନାହିଁ । ସେ ଗ୍ରାମସେବିକା ତାଙ୍କ ସ୍ୱାମୀଙ୍କୁ କହିଲେ । ସେ ମହାଶୟଙ୍କର ମୋ ଉପରେ ରାଗ ରହିଲା । ଏହା ମଧ୍ୟରେ ସେ ଗ୍ରାମସେବିକାଙ୍କର ଟ୍ରେନିଂ ଯିବାକୁ ଅର୍ଡର ଆସିଲା । ମୋତେ ଦାୟିତ୍ୱ ଦେଇ ବିଡିଓ ଛୁଟିରେ ଗଲେ ଏବଂ ମୋତେ କହିଦେଇ ଗଲେ ସାଙ୍ଗେ

ସାଙ୍ଗେ ସେ ଗ୍ରାମସେବିକାଙ୍କୁ ରିଲିଭ୍ କରି ଦେବାପାଇଁ । ଯେଉଁଦିନ ଅର୍ଡର ଆସିଲା ତାପରଦିନ ୧୧ଟାରେ ରିଲିଭ୍ କରିଦେଲି । ତାଙ୍କ ସ୍ୱାମୀ ଆଚାର୍ଯ୍ୟ ବାବୁ ଗୋଟେ ଡାକ୍ତର ସାର୍ଟିଫିକେଟ୍ ଧରି ଆସିଲେ ତାଙ୍କ ସ୍ତ୍ରୀ ରିଲିଭ୍ ହୋଇଥିବା ଚିଠି ପାଇ ମୋ ଉପରେ ମନେ ମନେ ଭାରି ରାଗିଲେ । ଅଳ୍ପଦିନ ପରେ ମୋର ଅସ୍ତରଙ୍ଗ ବ୍ଲକ୍‌କୁ ବଦଳି ଅର୍ଡର ହେଲା ଏବଂ ମୋ ରିଲିଭର ପହଞ୍ଚିଗଲେ । କିନ୍ତୁ ପୁରୀ କଲେକ୍ଟର ମୋ ରିଲିଭର୍‌ଙ୍କୁ ଅସ୍ତରଙ୍ଗକୁ ପଠାଇଦେଲେ । ମୋତେ ଦାୟିତ୍ୱ ନଦେବାକୁ ଅର୍ଡର କରି ଡିପାର୍ଟମେଣ୍ଟକୁ ଜଣେଇ ଦେଲେ । ଛ'ମାସ ନପୁରୁଣୁ ଫେରେ ମୋ ବଦଳି ଅର୍ଡର ଆସିଲା । ମୁଁ ବିଡ଼ିଓଙ୍କ ଜରିଆରେ ଗୋଟେ ରିପ୍ରେଜେଣ୍ଟେସନ୍ କରି ଛୁଟି ନେଇ ଘରକୁ ଆସିଲି ଏବଂ ଚାକିରି ଛାଡ଼ିଦବାକୁ ଇଚ୍ଛାକଲି । ସତ୍ୟପ୍ରିୟ ବାବୁ ଏ ଖବର ପାଇ ମୋତେ ଡକାଇ ମୋଠାରୁ ସବୁକଥା ବୁଝି ଡାଇରେକ୍ଟରଙ୍କୁ ଫୋନ୍ କଲେ । ଡାଇରେକ୍ଟର କହିଲେ ମୁଁ ତାଙ୍କର ରିପ୍ରେଜେଣ୍ଟେସନ୍ ପାଇଛି । ମୋତେ ଖୋର୍ଦ୍ଧା ବ୍ଲକ୍‌ରେ ଯୋଗ ଦେବାପାଇଁ ଅର୍ଡର କଲେ । ତା ୩୦.୬.୧୯୬୨ରେ ଖୋର୍ଦ୍ଧା ବ୍ଲକ୍‌ରେ ମୁଁ ଯୋଗଦେଲି । ଖୋର୍ଦ୍ଧା ବ୍ଲକ୍‌ରେ ବିଡ଼ିଓ କେହି ଯୋଗ ଦେଇନଥାନ୍ତି । ଖୋର୍ଦ୍ଧା ତହସିଲଦାର ଦାୟିତ୍ୱରେ ଥାନ୍ତି । ସେତେବେଳେ ଭଡ଼ାରେ ଓଲସିଙ୍ଗର ଦାଶରଥି ପଟ୍ଟନାୟକଙ୍କ ଘରେ ବ୍ଲକ୍ ଅଫିସ୍ ହେଉଥାଏ । ମୁଁ ସେହି ଘରେ ଗୋଟେ ବଖରାରେ ରହିଲି । ମୁଁ ହାତରେ ରୋଷେଇ କରିଖାଏ । ନିମାପଡ଼ାରେ ଥିଲାବେଳେ ମଧ ମୋ ସ୍ତ୍ରୀ ନଥିଲାବେଳେ, ହାତରେ ରୋଷେଇ କରି ଖାଉଥିଲି । ହୋଟେଲରେ ଖାଇବାକୁ ଭଲ ପାଏନାହିଁ । ମୁଁ ଖୋର୍ଦ୍ଧାରେ ଯୋଗ ଦେଲାବେଳକୁ ଖୋର୍ଦ୍ଧା ବ୍ଲକ୍ ସରକାରଙ୍କ ଦ୍ୱାରା ପୂର୍ଣ୍ଣ ସ୍ୱୀକୃତି ପାଇନଥାଏ । ତେଣୁ ମୋତେ ବହୁତ ପରିଶ୍ରମ କରିବାକୁ ପଡ଼ିଲା । ସବୁ ପଞ୍ଚାୟତକୁ ଯାଇ ସର୍ଭେ ରିପୋର୍ଟ ଯୋଗାଡ଼ କରିବାକୁ ହେଲା । ତା ସହିତ ଅଫିସରେ ଅଫିସ୍ କାମ କରେ । ପ୍ରତ୍ୟେକ ଦିନ ଅଫିସର ମୁଖ୍ୟ କିରାଣୀଙ୍କ ସହ ତହସିଲଦାରଙ୍କ ଦପ୍ତରକୁ ଯାଇ ମିସଲ ତଳେ ଠିଆ ହୋଇ ତହସିଲଦାରଙ୍କୁ ସବୁ କାଗଜପତ୍ର ବୁଝାଇବାକୁ ହୁଏ । କିନ୍ତୁ ଜଣେ ଆସିଷ୍ଟାଣ୍ଟ ବିଡ଼ିଓ ନୂଆ ହୋଇ ଭୁବନେଶ୍ୱର ସେକ୍ରେଟେରିଏଟରୁ ଯାଇ ଯୋଗଦେଇଥାନ୍ତି ।

ମୋ ଠାରୁ ତାଙ୍କ ଦରମା କମ୍ ଏବଂ ପୋଜିସନ୍ କମ୍, କିନ୍ତୁ ସେ ଯାଇ ତହସିଲଦାରଙ୍କ ପାଖରେ ବସନ୍ତି । ମୋତେ ଭଲ ଲାଗିଲା ନାହିଁ । ମୁଁ ହେଡ୍‌କ୍ଲର୍କଙ୍କ ହାତରେ ତହସିଲଦାରଙ୍କୁ ଖବର ଦେଲି । ମୁଁ ତହସିଲ ଅଫିସକୁ ବ୍ଲକ୍ କାଗଜପତ୍ର ବୁଝାଇବାକୁ ଯିବିନାହିଁ । ତହସିଲଦାର ଘଣ୍ଟେ ଖଣ୍ଡେ ବ୍ଲକ୍ ଅଫିସ୍‌କୁ ଆସି ଅଫିସ କରନ୍ତୁ । ଟୋକା ତହସିଲଦାର ଶୁଣି ରାଗିଗଲେ ଏବଂ ଖୋର୍ଦ୍ଧା (ଏସ୍.ଡି.ଓ) ସବ୍‌କଲେକ୍ଟରଙ୍କୁ ମୋ ବିରୁଦ୍ଧରେ କହିଲେ । ''ମୁଁ କିଛି କାମ କରୁନାହିଁ । ଘରକୁ ଯାଉଚି'' ଇତ୍ୟାଦି । ଏସ୍‌ଡିଓ ଖୋର୍ଦ୍ଧା ଜିଲ୍ଲା କୃଷି ଅଫିସର ପୂର୍ଣ୍ଣଚନ୍ଦ୍ର ପଟ୍ଟନାୟକଙ୍କୁ ମୋ ବିଷୟରେ ପଚାରିଲେ । ସେ କହିଲେ ମୁଁ ସର୍ଭେ କାର୍ଯ୍ୟରେ ଲାଗିଛି । ମୋତେ ଡାକି ପଚାରିଲେ ।

ମୁଁ ଚାକିରି କରି ଘରକୁ କିଛି ଟଙ୍କା ଦିଏ ନାହିଁ କି ମୋତେ ବଡ଼ ଭାଇନା କିଛି ମାଗନ୍ତି ନାହିଁ । କିନ୍ତୁ ଜମିବାଡ଼ି ବିଷୟରେ ଟିକିଏ ବଡ଼ ଭାଇନା କେଦାରନାଥ ମହାପାତ୍ରଙ୍କ ସଙ୍ଗେ ମନାନ୍ତର ହେଲା । ଆମର ଭୁବନେଶ୍ୱର ବଜାରରେ ଥିବା ବୈଦ୍ୟଷ୍ଟୋର ବହୁ ଦିନର ଦୋକାନ । ମୋର ଉପରଭାଇ କୈଳାସଚନ୍ଦ୍ର ମହାପାତ୍ର ବୁଝୁଥିଲେ । ସେ ୧୯୫୨ ମସିହାରେ ମରିଗଲେ । ସୁନ୍ଦରପଦାର ଲୋକନାଥ ମହାନ୍ତିଙ୍କୁ ବୁଝିବାକୁ ଦିଆଯାଇଥିଲା । ବଡ଼ଭାଇନା ସେ ଦୋକାନ ପାଇଁ କିଛି ଟଙ୍କା ଦେଇଥିଲେ । ସେ ଦୋକାନରେ ତାଙ୍କର ବଡ଼ପୁଅ ପ୍ରସନ୍ନ (ଅଗାଧୁ)କୁ ବୁଝିବାକୁ ଦେଲେ । ମୁଁ ଭାଇନାଙ୍କୁ କହିଲି କୈଳାସ ଭାଇନାଙ୍କ ପିଲେ କିପରି ଚଳିବେ । ବଡ଼ ମଝିଆ ଭାଇନା କବିରାଜ ବାସୁଦେବ ମୋତେ କହିଲେ ତୁ ଚାକିରି କରିବୁଲିବୁ । ବଡ଼ ଭାଇନା ଏପରି ହଇରାଣ କରିବେ । ଚାଷୀମାନେ ଠିକ୍ ଭାବରେ ଧାନ ଦେଉନାହାନ୍ତି । ମୁଁ ବଡ଼ଭାଇନାଙ୍କୁ ବାଧ କରି କୈଳାସ ଭାଇନାଙ୍କ ବଡ଼ପୁଅ ଘନକୁ ଦୋକାନରେ ବସାଇଲି । ଚାକିରି ଛାଡ଼ିବାକୁ ସ୍ଥିର କଲି । ଆମଘରେ ବୋଉର, ବଡ଼ନାନୀର ଏବଂ ବଡ଼ ଭାଇନାଙ୍କର ଶ୍ୱାସ ରୋଗ ଥିଲା । ଖୋର୍ଦ୍ଧାରେ ବହୁତ ଖଟିବାକୁ ପଡ଼ିଲା । ଖୋର୍ଦ୍ଧାରେ ସବୁଦିନ ୨୦/୨୫ ମାଇଲି ସାଇକେଲରେ ବୁଲି ପଞ୍ଚାୟତର ଗ୍ରାମସେବକଙ୍କ ସଙ୍ଗେ ମିଶି ସର୍ଭେ ରିପୋର୍ଟ ସଂଗ୍ରହ କରେ । କାରଣ ଯଦି ସେ ବର୍ଷ ଖୋର୍ଦ୍ଧା ବ୍ଲକ୍ ସରକାର ଘୋଷଣା ନକରନ୍ତି ମୋତେ

ଖରାପ ଲାଗିବ ଏବଂ ମୋ ସୁନାମରେ ଆଞ୍ଚ ଆସିବ । ୧୯୬୨ ଜୁନ ମାସ ବେଳକୁ ନିକୁଞ୍ଜ କିଶୋର ଦାସ ନିମାପଡ଼ାରୁ ଖୋର୍ଦ୍ଧାକୁ ବିଡିଓ ହୋଇ ବଦଳି ହୋଇ ଆସିଲେ । ତାଙ୍କ ସଙ୍ଗେ ମୋର ଘନିଷ୍ଠତା ଥିଲା । ମୁଁ ତହସିଲଦାରଙ୍କ ବ୍ୟବହାର କଥା ତାଙ୍କୁ କହିଲି । ସେ ଏସ୍.ଡି.ଓ କୁ ସବୁକଥା କହିଲେ । ଏସ୍‌ଡିଓ ମନଦୁଃଖ କଲେ । କହିଲେ ମୁଁ ତହସିଲଦାରଙ୍କୁ ଡାକି କହିଲେ କିଛି ଲାଭ ହେବନାହିଁ । ତୁମେ ବ୍ଲକ୍ ଅଫିସରେ ଗୋଟେ ଭୋଜି କର । ଖୋର୍ଦ୍ଧାର ସବୁ ଅଫିସରଙ୍କୁ ଡାକ, ସେଇଠି ସମସ୍ତଙ୍କ ଆଗରେ ତହସିଲଦାରଙ୍କୁ ମୁଁ ଗୁଣବାବୁଙ୍କ କଥା କହିବି । ନିକୁଞ୍ଜ ବାବୁ ଜାଣନ୍ତି ମୁଁ ଭଲ ଭୋଜି ଯୋଗାଡ଼ କରିପାରେ । ଭୋଜି ହେଲା ଏସ୍.ଡି.ଓ ସବୁ ଅଫିସରଙ୍କ ଆଗରେ ମୋ କଥା ତହସିଲଦାରଙ୍କୁ କହିଲେ । ତହସିଲଦାର ଦୁଃଖ ପ୍ରକାଶ କଲେ । ମୋ ଘର କଥା ନିକୁଞ୍ଜବାବୁ ଆଗରୁ ମୋ ଠାରୁ ଶୁଣିଥିଲେ । ତା ୧୮.୧୨.୧୯୬୨ ରେ ମୁଁ ଛୁଟି ନେଇ ଆସିଲି ଏବଂ ଡାକ୍ତର ସାର୍ଟିଫିକେଟ୍ ଦେଇ ଛୁଟି ନେଇ ରହିଲି । ଚାକିରିରେ ଡୋର ବାନ୍ଧିଲି । ମୋର ଭଣଜା ଅଭିରାମ ମହାପାତ୍ର, ମୁଁ ମିଶି ଡାଲମିଆ ଧର୍ମଶାଳାର ସାମ୍ନା ପଟେ ଗୋଟେ ଘର ଟ ୫୦/- ରେ ଭଡ଼ା ନେଇ ଲୁଗାଦୋକାନ କଲୁ । ମୁଁ ଜମିବାଡି ମଧ୍ୟ ବୁଝିଲି । ଏହି ସମୟରେ ପଞ୍ଚାୟତିରାଜ ଡାଇରେକ୍ଟର ଅଫିସର ଅଫିସ ସୁପରିଣ୍ଟେଣ୍ଡେଣ୍ଟ ହରିହର ଦାଶ (ମୋ ଶ୍ୱଶୁର ଘର ଆଡୁ ବନ୍ଧୁ) ମୋ ଖୁଡତାଶୁର ଦ୍ୱିଜବର ପଣ୍ଡାଙ୍କ ଠାରୁ ଶୁଣି ମୋତେ ଆସି କହିଲେ ଆଚାର୍ଯ୍ୟ ବାବୁ ତୁମ ବିଷୟରେ ମୋତେ ବହୁତ ଭୁଲ ଧାରଣା ଦେଇଛନ୍ତି । ମୁଁ ଜାଣେ ନାହିଁ ତୁମେ ଚମ୍ପା ବର (ମୋ ସ୍ତ୍ରୀ ନାଁ ଚମ୍ପା) ବୋଲି । ଏବର୍ଷ ତୁମେ ଜଣେ କୃଷି ବିଭାଗରୁ ବି.ଡ଼ି.ଓ ହୋଇଛ । ମୁଁ ଚେଷ୍ଟା କରି ତୁମକୁ ଘର ପାଖରେ ବାଲିଅନ୍ତା ବା ବାଲିପାଟଣା ବିଡ଼ିଓ କରିଦେବି । ମୁଁ କିନ୍ତୁ ଆଉ ଚାକିରି କରିବାକୁ ରାଜି ହେଲିନାହିଁ ।

ଏହି ସମୟରେ କୃଷିବିଭାଗ ଡାଇରେକ୍ଟର ଅଫିସ ସୁପରିଟେଣ୍ଡେଣ୍ଟ ଥିଲେ ୰ ବ୍ରଜ ସିଂ । ସେ ମୋର ଅତି ଘନିଷ୍ଠ ବନ୍ଧୁ ଥିଲେ । ସେ କହିଲେ ଆଉ କେତେଦିନ ଛୁଟିରେ ରହିବ । ମୁଁ ୬ ନଂ ଡାକ୍ତରଖାନାର ସୁପରିଣ୍ଟେଣ୍ଡେଣ୍ଟଙ୍କୁ ଲେଖି ଦେଉଛି । ଗୋଟେ ଡାକ୍ତର ସାର୍ଟିଫିକେଟ୍ ଦେଲେ ମୁଁ ତୁମର ପେନସନ୍

କରିଦେବି । ମୋର ସେତେବେଳେ ଶ୍ୱାସରୋଗ ବାହାରିଥାଏ । ତେଣୁ ବିନା ଖର୍ଚ୍ଚରେ ଡାକ୍ତରି ସାର୍ଟିଫିକେଟ୍ ଟିଏ ପାଇଗଲି । ବ୍ରଜବାବୁ ଲାଗି ପେନ୍‌ସନ କରିଦେଲେ । ତା ୧୦.୧୧.୬୫ ରେ ମୁଁ ଇନଭାଲିଡ୍ ପେନ୍‌ସନ୍ ପାଇଲି, ଏବେବି ପାଉଛି ।

ଏହି ସମୟରେ ପୁରୁଣା ଭୁବନେଶ୍ୱରର ପ୍ରତ୍ୟେକ ସର୍ବସାଧାରଣ କାର୍ଯ୍ୟମାନ କଲି । ମୋର ବନ୍ଧୁ ✓ ଶରତଚନ୍ଦ୍ର ମହାପାତ୍ର କେଦାରଗୌରୀ ମନ୍ଦିର, ଗୌରୀ କୁଣ୍ଡ, ଶ୍ୟାମ କୁଣ୍ଡ (ଦାନ୍ତଘସା କୁଣ୍ଡ) ଦୁଧକୁଣ୍ଡ ପ୍ରଭୃତିର ମରାମତି କରିବା, ବେଢ଼ା ସଫା ରଖିବା କାର୍ଯ୍ୟମାନ କରୁ । ସାହିରେ ପୁରୁଣାଭୁବନେଶ୍ୱରରେ କିଛି କଳିତକରାଳ ହେଲେ ତୁଟାଉ । ବିଶେଷତଃ ହରଚଣ୍ଡୀ ସାହିରେ କିଛି କଳିତକରାଳ ହେଲେ ଭଦ୍ରଲୋକି କରି ତୁଟାଇ ଦେଉ । ଥାନାକୁ ଯିବାକୁ ଦେଉନାହିଁ । ଏପରିକି ଗାଁ ଗାଁ ମଧ୍ୟରେ କିଛି କଳି ହେଲେ ଥାନାରେ ବସି ତୁଟାଇ ଦଉ । ହରଚଣ୍ଡୀ ସାହିର ଦୁର୍ଗାପୂଜା ମୁଁ, ଶରତ ଏବଂ ସାହିର ଲୋକମାନଙ୍କୁ ଧରି ଆରମ୍ଭ କଲୁ । (୧୯୪୯ ମସିହା ବେଳକୁ ଆରମ୍ଭ କରିଥିଲୁ) ଏବେବି ସାହିର ପିଲାମାନେ ଭଲଭାବରେ ପୂଜା କରୁଛନ୍ତି । ଭୁବନେଶ୍ୱର ଡାକ୍ତରଖାନାଟି ପୂର୍ବରୁ ପୁରୀ ଜିଲ୍ଲା ଡିଷ୍ଟ୍ରିକ୍ଟ ବୋର୍ଡ ଅଧୀନରେ ଥିଲା । ଭୁବନେଶ୍ୱର ଏନ୍.ଏ.ସି. ହେବାପରେ ଏହି ଡାକ୍ତରଖାନା ଏନ୍.ଏ.ସି. ଅଧୀନକୁ ଆସିଲା । ଡାକ୍ତର ଗଦାଧର ମହାପାତ୍ର ୧୯୫୦ ମସିହା ବେଳକୁ ଏହି ଡାକ୍ତରଖାନାରେ ଯୋଗଦେଲେ । ଡାକ୍ତର ବାବୁଙ୍କ ସହମୋର ପରିଚୟ ହେଲା । ସେତେବେଳେ ଡାକ୍ତରଖାନାର ପାଞ୍ଚ ବଖରା ଘର । ଦୁଇ ବଖରାରେ ରୋଗୀ ରହନ୍ତି । ୮ଟି ବେଡ୍ ଥିଲା । ଗୋଟେ ଘରେ ଡାକ୍ତରବାବୁ ଏବଂ ଗୋଟେ ଘରେ କମ୍ପାଉଣ୍ଡର ରୋଗୀମାନଙ୍କୁ ଔଷଧ ଦିଅନ୍ତି । ଗୋଟେ ଘରେ ଅପରେସନ୍ ହୁଏ । ସେତେବେଳେ ରୋଗୀମାନେ ପ୍ରାୟ ଔଷଧ ଡାକ୍ତରଖାନାରୁ ପାଉଥିଲେ । ଡାକ୍ତରବାବୁ ଏହି ଡାକ୍ତରଖାନାରେ ଯୋଗଦେବା ପରେ ବର୍ଷେ ଦୁଇବର୍ଷ ମଧ୍ୟରେ ଡାକ୍ତର ବାବୁଙ୍କର ବହୁତ ନାଁ ହୋଇଗଲା । ଭୁବନେଶ୍ୱର ଆଖପାଖ ଗାଁ ବାଲିଅନ୍ତା, ବାଲିପାଟଣା ଏପରିକି ନିମାପଡ଼ା ଏରିଆର ରୋଗୀମାନେ ଆସନ୍ତି । ଏହି ଡାକ୍ତରଖାନାକୁ ଗଦାଧର ଡାକ୍ତରଖାନା ବୋଲି

ଡାକିଲେ । ଏବେ ମଧ୍ୟ କେତେ ଲୋକ ଡାକୁଛନ୍ତି । ୧୯୫୦/୫୧ ବେଳକୁ ଭୁବନେଶ୍ୱରକୁ ଇଲେକ୍ଟ୍ରି ଲାଇନ୍ ଆସିଲା । ଡାକ୍ତରବାବୁ, ମୁଁ ଏବଂ ମୋର ସାଙ୍ଗମାନେ ଚାନ୍ଦା କରି ଡାକ୍ତରଖାନାକୁ ଇଲେକ୍ଟ୍ରି ଲାଇନ୍ ନେଲୁ । ଅପରେସନ୍ ଘରେ ଗୋଟେ ପଙ୍ଖା ଲଗାଇବାକୁ ଡାକ୍ତରବାବୁ ମୋତେ କହିଲେ । ମୋ ଶ୍ୱଶୁର ବେମାର ପଡ଼ିଥିଲେ । ଭଲ ହୋଇ ଗଲାବେଳକୁ ତାଙ୍କଠାରୁ ଗୋଟେ ପଙ୍ଖା ଚାନ୍ଦା କଲୁ । ୧୯୫୪ ବେଳକୁ ମୁଁ ଭୁବନେଶ୍ୱର ଫାର୍ମରେ ଓଭରସିୟର ଥାଏ । ଡକ୍ଟର ବିଶ୍ୱନାଥ ସାହୁ ଫାର୍ମ ଦାୟିତ୍ୱରେ ଥାନ୍ତି । ସେ ବେମାର ପଡ଼ିଲେ । ମୁଁ ଡାକ୍ତର ବାବୁଙ୍କ ପାଖକୁ ନେଇ ତାଙ୍କର ଚିକିତ୍ସା କରାଇଲି । ସେ ଭଲ ହେବାପରେ ଡାକ୍ତରବାବୁଙ୍କୁ ତାଙ୍କ ଫିସ୍ ଦେବାକୁ କହିଲେ । ମୁଁ ଆଗରୁ ଡାକ୍ତରବାବୁଙ୍କୁ କହିଥିଲି କିଛିଭଲ ଭଲ ଗଛ ସାହୁବାବୁଙ୍କୁ ମାଗିବାକୁ । ଡାକ୍ତରବାବୁ ସାହୁବାବୁଙ୍କ ଗଛ କଥା କହିବାରୁ ସେ ଭଲ ଭଲ ଗଛ ମଗାଇ ଦେଲେ । ମୁଁ ଦାୟିତ୍ୱ ନେଇ ଡାକ୍ତରଖାନା ଚାରିପଟେ ଲଗାଇଦେଲି । ପରେ ଡାକ୍ତରଖାନା ବଢ଼ିଗଲା । ବହୁତ ଘର ତିଆରି ହେଲା । ଗଛ ଗୁଡିକ କଟା ହୋଇଗଲା । ଡାକ୍ତରଖାନାର ଉନ୍ନତି ପାଇଁ ମୁଁ ଏନ୍.ଏ.ସି. ଚେୟାରମ୍ୟାନ୍ ହେବା ପର୍ଯ୍ୟନ୍ତ ଏବଂ ଡାକ୍ତରବାବୁ ଅବସର ନେବା ପର୍ଯ୍ୟନ୍ତ ଡାକ୍ତରଖାନାର ଉନ୍ନତି ପାଇଁ ଡାକ୍ତରବାବୁ ଯେତେ ବେଳେ ମୋତେ ଯାହା କହୁଥିଲେ ମୁଁ ସାହାଯ୍ୟ କରୁଥିଲି ।

୧୯୭୩ ମସିହା ଏପ୍ରିଲ ମାସରେ ପ୍ରଥମ କରି ନିର୍ବାଚନ ହେଲା । ମୋର ଇଚ୍ଛା ନଥିଲା ଏନ୍.ଏ.ସି. ନିର୍ବାଚନରେ ଠିଆ ହେବାପାଇଁ । ମୋର ବନ୍ଧୁ ଶ୍ରୀଧର ମହାସୁଆର ଏବଂ ଭୁବନେଶ୍ୱରର ବିଶିଷ୍ଟ ବ୍ୟବସାୟୀ (ସମୃଦ୍ଧି) କୁଳମଣି ଗରାବଡୁ ମୋତେ ବାଧ୍ୟ କଲେ । ସେ କହିଲେ ଆଗରୁ ଇଉନିୟନ୍ ବୋର୍ଡରେ ନନା ଭୋଟ ପାଇ ସବୁବେଳେ ଜିତୁଥିଲେ ଏବଂ ଇଉନିୟନ୍ ବୋର୍ଡ ମେମ୍ବର ହେଉଥିଲେ । ତୁ ଚାକିରି ଛାଡ଼ିଦେଇ ଘରେ ରହିଲୁ, କାହିଁକି ଏନ୍.ଏ.ସି.ଭୋଟରେ ଠିଆ ହେବୁ ନାହିଁ । ୰ ଶରତ ମହାପାତ୍ର, ହରି ପୂଜାପଣ୍ଡା, ଗନ୍ଧର୍ବ ଶତପଥି, ପ୍ରଭୃତି ମୋର ବନ୍ଧୁମାନେ ଏବଂ ଆମ ପରିବାରର ଭାଇନା, ପୁତୁରା ମୋତେ ସାହାଯ୍ୟ କଲେ । ମୋର ଟ ୨୦୦.୦୦ (ଦୁଇଶହ

ଟଙ୍କା) ଖର୍ଚ୍ଚ ହୋଇଥିଲା । ସେହି ସମୟରେ ଅନ୍ୟ ୱାର୍ଡରେ ପ୍ରାୟ ଦଶ ପନ୍ଦର ହଜାର ଟଙ୍କା ଖର୍ଚ୍ଚ କରି ୱାର୍ଡ ମେମ୍ବର ପାଇଁ ଲୋକ ଲଢୁଥିଲେ । ମୋ ବିରୁଦ୍ଧରେ ଓକିଲ ଦୁର୍ଗାଚରଣ ମହାପାତ୍ର, ସିନୁ ଗରାବଡୁ (ନିଶିକାନ୍ତ) ଦେବପଣ୍ଡା ଏବଂ କପିଳେଶ୍ୱରର ଜଣେ ମଲିଆ ଚାରିଜଣ ଠିଆ ହୋଇଥିଲେ । ସମସ୍ତେ ଅମାନତ ହରାଇଲେ । ଏହି ଏନ୍.ଏ.ସି. ନିର୍ବାଚନରେ ଆମେ ୧୦ ଜଣ ନିର୍ବାଚିତ ସଭ୍ୟ ଏବଂ ସରକାରଙ୍କ ଆଡୁ ୧୫ ଜଣ ସରକାରଙ୍କ ପ୍ରତିନିଧି ସଭ୍ୟ ରହିଲେ । ଇଞ୍ଜିନିୟର ପ୍ରହଲ୍ଲାଦ ପଟ୍ଟନାୟକ ଚେୟାରମ୍ୟାନ୍ ହେଲେ । ତା ୧୧.୫.୧୯୭୩ରେ ଭାଇସ ଚେୟାରମ୍ୟାନ ନିର୍ବାଚନ ହେଲା । ମୋ ବିରୁଦ୍ଧରେ ୰ ରମେଶଚନ୍ଦ୍ର ମିଶ୍ର ଠିଆ ହୋଇଥିଲେ । ଡଃ ହରେକୃଷ୍ଣ ମହତାବ ଏକାମ୍ର ନିବାସରେ ରହୁଥିଲେ । ସେ ତ ସବୁ ଖବର ରଖନ୍ତି । ମତେ ଡକେଇ ଭାଇସ୍ ଚେୟାରମ୍ୟାନ୍ ପାଇଁ ଲଢ଼ିବାକୁ କହିଲେ ଏବଂ ତାଙ୍କ ଷ୍ଟାଫ୍‌କୁ ନେଇ ମୋତେ ଗାଡ଼ି ଦେଇ ସାହାଯ୍ୟ କଲେ । ମୋ ସମୁଦି (ଭୁବନେଶ୍ୱରର ବିଶିଷ୍ଟ ବ୍ୟବସାୟୀ) ଏଥିରେ ମୋତେ ପୂର୍ଣ୍ଣସହଯୋଗ କଲେ । ରମେଶ ବାବୁଙ୍କୁ ବଡ଼ଗଡ଼ର ଗୋକୁଳ ଜେନା ଏବଂ ଅନ୍ୟାନ୍ୟ ବହୁ ଭଦ୍ରଲୋକ, ନେତା ସାହାଯ୍ୟ କରୁଥାନ୍ତି । ସମାନ ସମାନ ଭୋଟ ହେଲା । ମୁଁ ଲଟେରିରେ ଜିତିଲି । ସ୍ୱାସ୍ଥ୍ୟ ଏବଂ ଶିକ୍ଷା ଦାୟିତ୍ୱରେ ମୁଁ ରହିଲି । ଚେୟାର୍‌ମ୍ୟାନ୍ ପ୍ରହଲ୍ଲାଦ ପଟ୍ଟନାୟକ ଏବଂ ମୋ ମଧ୍ୟରେ ବୁଝାମଣାରେ ଏନ୍.ଏ.ସି. କାର୍ଯ୍ୟ ଭଲ ଭାବରେ ଚାଲିଲା । ଏହି ସମୟରେ ଅନନ୍ତ ମିଶ୍ର ଓ.ଏ.ଏସ୍. ନିର୍ବାହୀ ଅଧିକାରୀ ଥିଲେ । ସେ ମହାଶୟ ସବୁକାମରେ ସହଯୋଗ କରନ୍ତି । ସେ ଜଣେ ଦକ୍ଷ ଅଫିସର ଥିଲେ । ମୁଁ ସବୁବେଳେ ମୋର ନିତ୍ୟକର୍ମ ସକାଳ ୭ଟା ପୂର୍ବରୁ ସାରି ପ୍ରତି ୱାର୍ଡ (ମହଲ) ବୁଲେ । ୱାର୍ଡ଼୍ କାଉନ୍‌ସିଲର ମାନଙ୍କ ଘରକୁ ଯାଇ ଅଭାବ ଅସୁବିଧା କଥା ବୁଝେ । କେଉଁ ୱାର୍ଡରେ କଣ କାମ ହେବା ଦରକାର ନୋଟ୍ କରେ । କେଉଁ କାଉନ୍‌ସିଲର ମୋତେ ଭୋଟ୍ ଦେଇ ଭାଇସ୍ ଚେୟାର୍‌ମ୍ୟାନ୍ କରିଥିଲେ ବା ଭୋଟ ଦେଇନଥିଲେ ଭାବେ ନାହିଁ । ମଝିରେ ମଝିରେ ଏନ୍.ଏ.ସି ର ସ୍କୁଲ୍ ଗୁଡିକ ପରିଦର୍ଶନ କରି ସ୍କୁଲ୍‌ର ଅଭାବ ଅସୁବିଧା ବୁଝି ପ୍ରତିକାର କରିବାକୁ ଚେଷ୍ଟା କରେ ।

ଏହି ସମୟରେ ଁ ଦୁର୍ଗା ପ୍ରସାଦ ତ୍ରିପାଠୀ ଆଇ.ଏ.ଏସ୍ ଅର୍ବାନ୍ ସେକ୍ରେଟେରୀ ଥିଲେ । ସେ ହନୁମାନ ଭକ୍ତ । ସେ ଖବର ପାଇଲେ ବର୍ତ୍ତମାନ ମ୍ୟୁନିସିପାଲିଟିର ଯେଉଁ ହନୁମାନ ମନ୍ଦିର ଅଛି, ସେ ମନ୍ଦିରରେ କୌଣସି ଦେବତା ପ୍ରତିଷ୍ଠିତ ହୋଇ ନାହାନ୍ତି । ଏହି ମନ୍ଦିର ଏବଂ ତା ପାଖରେ ଥିବା କୋଠାଘର ଜଣେ ବଙ୍ଗାଳି ଡାକ୍ତର ଁ ହେମେନ୍ଦ୍ର ରାଏଙ୍କର ଥିଲା । ଏହି ମନ୍ଦିର କରିସାରିବା ପରେ ଦେବତା ବସାଇବା ପୂର୍ବରୁ ତାଙ୍କର ଦେହାନ୍ତ ହୋଇଗଲା । ଏହି ସମୁଦାୟ ହତାଟି ଏନ୍.ଏ.ସି. ପାଇଁ ଓଡ଼ିଶା ସରକାରଙ୍କ ଇଷ୍ଟେଟ୍ ଡିପାର୍ଟମେଣ୍ଟ ଭୂ-ଅର୍ଜନ କରିଥିଲେ । ମୋର ଦୁର୍ଗା ତ୍ରିପାଠୀଙ୍କ ସଙ୍ଗେ ପୂର୍ବରୁ ପରିଚିତ ଥିଲା । ବଡ଼ଭାଇନା କଳାହାଣ୍ଡିରେ ଚାକିରି କରୁଥିବା ବେଳେ ଦୁର୍ଗା ତ୍ରିପାଠୀଙ୍କ ବାପା ବ୍ରହ୍ମାନନ୍ଦ ତ୍ରିପାଠୀ କଳାହାଣ୍ଡିରେ ମାଜିଷ୍ଟ୍ରେଟ୍ ଥିଲେ । ପରେ ଦେଓ୍ୱାନ୍ ହୋଇଥିଲେ । ମତେ ଦୁର୍ଗା ତ୍ରିପାଠୀ କହିଲେ ମୁଁ ଦୁଇ ହଜାର ଟଙ୍କା ଦେଉଛି ଏବଂ ଏହି ହନୁମାନ ଫଟୋ ଦେଉଛି ତୁମେ ଘାଟିକିଆରେ ଯେଉଁମାନେ ମୂର୍ତ୍ତି ତିଆରି କରୁଛନ୍ତି ତାଙ୍କୁ ଏହି ଫୋଟ ଦେଇ ଗୋଟେ ହନୁମାନ ମୂର୍ତ୍ତି ତିଆରି କରାଇ ସେ ମନ୍ଦିରରେ ପ୍ରତିଷ୍ଠା କର । ୧୯୭୪ ମସିହାରେ ସେ ହନୁମାନ ମୂର୍ତ୍ତି ପ୍ରତିଷ୍ଠା କଲି । ଁ ନକୁଳ ଚରଣ ପାଢ଼ୀ ପୂଜକ ହୋଇ ରହିଲେ । ତାଙ୍କ ଅନ୍ତେ ତାଙ୍କ ପୁଅ ଜୀବନ, ଭୁବନ ବର୍ତ୍ତମାନ ପୂଜକ ଅଛନ୍ତି । ପୂଜକ ଜୀବନ, ଭୁବନ ହାତରୁ ଖର୍ଚ୍ଚ କରି ଅନ୍ନ ଭୋଗ, ବାଲ୍ୟଭୋଗ କରୁଛନ୍ତି ଏବଂ ବାର୍ଷିକ ମନ୍ଦିର ମରାମତି ଏବଂ ରଙ୍ଗକାମ କରୁଛନ୍ତି । ଚାରିପଟ ବେଢ଼ାର ବହୁତ ଉନ୍ନତି କରିଛନ୍ତି । ୧୯୭୨ ମସିହାରେ ଏନ୍.ଏ.ସି ନିର୍ବାଚନ ପାଇଁ ସରକାର ନୋଟିଫିକେସନ୍ କଲେ । କେହି ଜଣେ ସଭ୍ୟ ହାଇକୋର୍ଟରେ ମୋକଦ୍ଦମା କରି ରହିତ କରିଦେଲେ । ତେଣୁ ବର୍ଷେ ପର୍ଯ୍ୟନ୍ତ ରହିତ ହୋଇଥିଲା । ଏନ୍.ଏ.ସି. ନିର୍ବାଚନ ଏକ ବର୍ଷ ଡେରି ହୋଇ ଚାରିବର୍ଷ ଜାଗାରେ ପାଖାପାଖି ତିନି ବର୍ଷ କାର୍ଯ୍ୟ କରାଗଲା ।

୧୯୭୬ ମସିହାରେ ଦ୍ୱିତୀୟ ବାର ଏନ୍.ଏ.ସି. ନିର୍ବାଚନ ହେଲା । ଏଥର ଆମେ ୧୫ ଜଣ ସଭ୍ୟ ନିର୍ବାଚିତ ଏବଂ ୧୦ଜଣ ସଭ୍ୟ ସରକାରଙ୍କ ଆଡୁ ମନୋନୀତ ହେଲେ । ପ୍ରଥମ ୫/୬ ମାସ ଓକିଲ ଦୁର୍ଗାପ୍ରସନ୍ନ ପଟ୍ଟନାୟକ

ଚେୟାରମ୍ୟାନ୍ ନିର୍ବାଚିତ ହେଲେ । ମୋ ପାଇଁ ଡକ୍ଟର ହରେକୃଷ୍ଣ ମହତାବ ବହୁତ ଚେଷ୍ଟା କରିଥିଲେ । ସେତେବେଳେ ନନ୍ଦିନୀ ଦେବୀ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଥିଲେ । ସାମାନ୍ୟ କାରଣ ଦେଖାଇ ସରକାର ଦୁର୍ଗାବାବୁଙ୍କୁ ଚେୟାର୍‌ମ୍ୟାନ୍‌ରୁ ନିଲମ୍ବିତ କରିଦେଲେ । ତା ୨୭.୭.୭୬ ରେ ସଭ୍ୟମାନଙ୍କ ମଧ୍ୟରେ ସାନି ନିର୍ବାଚନ ହେଲା । ମୋ ବିରୁଦ୍ଧରେ ଅକ୍ଷୟ ତ୍ରିପାଠୀ (କାଉନ୍‌ସିଲର) ଚେୟାରମ୍ୟାନ୍ ଭାବେ ପ୍ରତିଦ୍ୱନ୍ଦିତା କରିଥିଲେ । ମୁଁ ଅଧିକ ଭୋଟ ପାଇ ଚେୟାରମ୍ୟାନ୍ ନିର୍ବାଚିତ ହେଲି । ଏହି ଚେୟାରମ୍ୟାନ୍ ନିର୍ବାଚନରେ ମୋର ବନ୍ଧୁ ଭୁବନେଶ୍ୱର ଏନ୍.ଏ.ସି.ର ପ୍ରଥମ ଚେୟାରମ୍ୟାନ୍ ଓକିଲ ଦୁର୍ଗାପ୍ରସନ୍ନ ପଟ୍ଟନାୟକ ମୋ ପାଇଁ ଚେଷ୍ଟାକଲେ । ତାଙ୍କରି ଚେଷ୍ଟା ଫଳରେ ମୁଁ ଚେୟାରମ୍ୟାନ୍ ହେଲି । ଏବେବି ତାଙ୍କର ମୋର ଘନିଷ୍ଠ ବନ୍ଧୁତା ରହିଛି । ସେତେବେଳେ ଯଦିଓ ଏନ୍.ଏ.ସି.ର କମ୍ ଆୟ ଥିଲା । ତଥାପି ସେହି ସୀମିତ ଆୟରେ ମୁଁ ପ୍ରତି ୱାର୍ଡରେ ରାସ୍ତା, ନାଳ, ନର୍ଦ୍ଦମା, ପୋଖରୀ ପ୍ରଭୃତି ବହୁତ ଉନ୍ନତିମୂଳକ କାର୍ଯ୍ୟ କରିଥିଲି । ନୂଆଗାଁ, ଗାଡ଼କଣ ଏରିଆକୁ ରାସ୍ତା ନଥିଲା । ରାସ୍ତା କଲି । ନୂଆଗାଁ, କପିଳେଶ୍ୱର, ବଡ଼ଗଡ଼, ବରମୁଣ୍ଡା, ୬ ନମ୍ବର ୟୁନିଟ୍‌ରେ ଗୋଟେ ଲେଖାଏଁ ହୋମିଓପ୍ୟାଥିକ୍ ଡାକ୍ତରଖାନା, ଏନ.ଏ.ସି. ତରଫରୁ ଗାଡ଼କଣରେ ଗୋଟେ ଏଲୋପ୍ୟାଥିକ୍ ଡାକ୍ତରଖାନା, ହରିଜନ ବସ୍ତିରେ ୩/୪ଟା କମ୍ୟୁନିଟି ସେଣ୍ଟର ଖୋଲାଗଲା । ଅନେକ ଗୁଡିଏ ୱାର୍ଡ ମାନଙ୍କରେ ଥିବା ଭାଗବତ ଘର, ଦେବୀଘରମାନ ପୁନରୁଦ୍ଧାର କରାଗଲା । ଭୁବନେଶ୍ୱରରେ ଥିବା ବାଳିକା ହାଇସ୍କୁଲ୍‌କୁ ସୁଭଦ୍ରା ମହତାବଙ୍କ ନାମରେ ଏବଂ ବହୁ ପୁରାତନ ଟାଉନ୍ ଉଚ୍ଚ ପ୍ରାଥମିକ ବିଦ୍ୟାଳୟକୁ 'ପଣ୍ଡିତ ରଘୁନାଥ ମହାପାତ୍ର'ଙ୍କ ନାମରେ ନାମିତ କରାଗଲା ।

ତା ୧୨.୫.୧୯୭୨ ରେ କେତେଜଣ ଯୁବ କାଉନ୍‌ସିଲର୍ ମୋ ବିରୁଦ୍ଧରେ ଅନାସ୍ଥା ପ୍ରସ୍ତାବ ଆଣିଲେ ଏବଂ ସରକାରଙ୍କ ଲ' ଡିପାର୍ଟମେଣ୍ଟରୁ ଅର୍ଡର କରାଇଲେ ଯେ, ସରକାରୀ ସଭ୍ୟ ଏହି ଅନାସ୍ଥାପ୍ରସ୍ତାବରେ ଭାଗନେଇପାରିବେ । ଏହା ବିରୁଦ୍ଧରେ ହାଇକୋର୍ଟରେ କେସ୍ କରିବା ପାଇଁ ଏନ୍.ଏ.ସି.ର ନିର୍ବାହୀ ଅଧିକାରୀ ମୋତେ ପ୍ରବର୍ତ୍ତାଇଲେ । ମୁଁ କହିଲି ୧୭ ଜଣ କାଉନ୍‌ସିଲର ମୋ ବିରୁଦ୍ଧରେ ଭୋଟ ଦେଲେ ଅନାସ୍ଥା ପ୍ରସ୍ତାବ ଗ୍ରହଣ

ହେବ । ଯଦି ୧୭ଜଣ ସଭ୍ୟ ମୋ ବିରୁଦ୍ଧରେ ଭୋଟ ଦେବେ ମୁଁ କାହିଁକି ଚେୟାରମ୍ୟାନ୍ ରହିବି ? ମୋର ବିଶ୍ୱାସ କେହି କାଉନ୍‌ସିଲର୍ ମୋ ବିରୁଦ୍ଧରେ ଭୋଟ ଦେବା ପାଇଁ ଆସିବେ ନାହିଁ । ପ୍ରକୃତରେ କେହି କାଉନ୍‌ସିଲର୍ ଆସିଲେ ନାହିଁ । କେବଳ ଖବର କାଗଜରେ ମୋ ବିରୁଦ୍ଧରେ ଅନାସ୍ଥା ପ୍ରସ୍ତାବ ଆସିଛି ବୋଲି ପ୍ରଚାର କରିବା ପାଇଁ କେତେଜଣ କାଉନ୍‌ସିଲର୍ ଏହି ଅନାସ୍ଥା ପ୍ରସ୍ତାବ ଆଣିଥିଲେ । ଏହି ସମୟରେ ଏକାମ୍ର କଲେଜ ଆରମ୍ଭ ହେଲା । ଡକ୍ଟର ୰ ହରେକୃଷ୍ଣ ମହତାବ ସଭାପତି, ୰ ସତ୍ୟପ୍ରିୟ ମହାନ୍ତି ଉପସଭାପତି, ସୁରେଶ କୁମାର ରାଉତରାୟ ସମ୍ପାଦକ, ୰ ରମେଶ ଚନ୍ଦ୍ର ମିଶ୍ର କୋଷାଧକ୍ଷ, ମୁଁ, ଓକିଲ ରବି ନାରାୟଣ ମହାନ୍ତି, ଭୁବନେଶ୍ୱର ଏ.ଡି.ଏମ୍ ପ୍ରଭୃତି ସଭ୍ୟ ରହିଲୁ । ପ୍ରଥମେ ବି.ଏମ୍. ହାଇସ୍କୁଲ୍‌ରେ କଲେଜ ଆରମ୍ଭ କରାଗଲା । ମୁଁ, ଏନ୍.ଏ.ସି. ନିର୍ବାହୀ ଅଫିସର ଶ୍ରୀ ବିଷ୍ଣୁଚରଣ ମହାନ୍ତି ଶିକ୍ଷାବିତ୍ ଶତ୍ରୁଘ୍ନ ନାଥଙ୍କ ଘରକୁ ଯାଇ ଅନୁରୋଧ କଲୁ ସେ କଲେଜର ଅଧକ୍ଷ ହେବା ପାଇଁ ସେ ରାଜି ହେଲେ । କଲେଜ ଆରମ୍ଭ ହେଲା । କଲେଜ ପାଇଁ ଜାଗାଠିକ୍ କରିବାର ଦାୟିତ୍ୱ ମୋତେ ଦିଆଗଲା । ଭୁବନେଶ୍ୱର ଯୁବକମାନଙ୍କ ଇଚ୍ଛା ପୁନାମା ଗେଟ୍ ଦକ୍ଷିଣପଟେ କଲେଜ କରିବାପାଇଁ । କିନ୍ତୁ ସେଠାରେ ୮ / ୧୦ ଏକର ସମତଳ ଜାଗା ନଥିଲା । ତେଣୁ ମୁଁ ବର୍ତ୍ତମାନ ଯେଉଁ ଜାଗାରେ କଲେଜ ଅଛି ସେହି ଜାଗା ଠିକ୍ କଲି । ମହତାବ ବାବୁ ଏବଂ ସତ୍ୟପ୍ରିୟ ବାବୁଙ୍କୁ ନେଇ ସେ ଜାଗା ଦେଖାଇଲି । ସେମାନେ ଜାଗାଟି ପସନ୍ଦ କଲେ । କଲେଜ ଘର ଆରମ୍ଭ ହେଲା । ୰ ଦିବାକର ଦାଶ ଠିକାଦାର କଲେଜ ଘର କାମ କଲେ । ଏହି ସମୟରେ ଏନ୍.ଏ.ସି.ର ଦୂରାବସ୍ଥା ସୁଧାରିବା ନିମନ୍ତେ ଅକ୍ଟ୍ରାଇ ଟାକ୍ସ ବସାଇବା ପାଇଁ ଓଡ଼ିଶା ସରକାରଙ୍କ ଅର୍ବାନ୍ ବିଭାଗ ଅନୁମତି ଦେଲେ । କିନ୍ତୁ ମହତାବ ବାବୁ ଏବଂ ସତ୍ୟପ୍ରିୟ ବାବୁ କହିଲେ ଏନ୍.ଏ.ସି. ଯଦି କଲେଜ ପାଇଁ ଲକ୍ଷେ ଟଙ୍କା ନଦେବ ତେବେ ଏହି ଅକ୍ଟ୍ରାଇ ଟାକ୍ସ ବସାଇବା ବିରୋଧ କରିବୁ । ମୁଁ କାଉନ୍‌ସିଲ ମିଟିଙ୍ଗରେ ପାସ୍ କରାଇ ଲକ୍ଷେ ଟଙ୍କା କଲେଜ ପାଇଁ ଦେଲି । ମୁଁ ଏହି କଲେଜ ଜାଗା ଠିକ୍ କରିବା ଠାରୁସେକ୍ରେଟେରିଏଟ୍ ବହୁବାର ଯାଇ ଷ୍ଟେଟ୍ ଅଫିସରଙ୍କୁ ଆଣି ଜାଗା ଦେଖେଇ ଜାଗା ଆଣିବା , ପିପିଲି ପଞ୍ଚାୟତ ଇଣ୍ଡଷ୍ଟ୍ରିରୁ ଫର୍ଣ୍ଣିଚର ଆଣିବା ପର୍ଯ୍ୟନ୍ତ ସବୁ କାର୍ଯ୍ୟ କରିଛି । କିନ୍ତୁ ଦୁଃଖର ସହିତ ଲେଖୁଛି

ରମେଶ ମିଶ୍ରଙ୍କର ହାମବଡ଼ା ନୀତି ଯୋଗୁଁ ଭଲ ଭଲ ପ୍ରିନ୍‌ସିପାଲ, ମହତାବ ସଭାପତି ଅଛନ୍ତି ବୋଲି ଆସିଲେ କିନ୍ତୁ ବେଶିଦିନ ରହିଲେ ନାହିଁ । ଯାହାଦ୍ୱାରା କଲେଜର ବିଶେଷ ଉନ୍ନତି ହୋଇପାରିଲା ନାହିଁ ।

ମୁଁ ଏନ୍.ଏ.ସି. ଚେୟାରମ୍ୟାନ୍ ଥିବା ସମୟରେ ଲିଙ୍ଗରାଜ ମନ୍ଦିର ଦକ୍ଷିଣ ପଟେ ଥିବା ହାଟ ନିକଟରେ, ଭୁବନେଶ୍ୱର ରେଳ ଷ୍ଟେସନ୍ ନିକଟରେ ଏବଂ ଏକ ନମ୍ବର ହାଟ ନିକଟରେ, ସୁଲଭ ଶୌଚାଳୟ ମାନ ନିର୍ମାଣ କରାଯାଇଥିଲା । ବର୍ତ୍ତମାନ ଲିଙ୍ଗରାଜ ମନ୍ଦିର ପାଖରେ ଥିବା ଲିଙ୍ଗରାଜ ମାର୍କେଟ୍ ପାଇଁ ଏନ୍.ଏ.ସି. ତରଫରୁ ଜାଗା ଅଧିଗ୍ରହଣ କରାଗଲା । ବହୁ ପୂର୍ବରୁ ଏହି ଯୋଜନା ଥିଲେ ମଧ୍ୟ କାର୍ଯ୍ୟକାରୀ ହୋଇ ପାରୁନଥିଲା । ଏହି କାର୍ଯ୍ୟରେ ମହତାବ ବାବୁ ମୋତେ ବହୁତ ସାହାଯ୍ୟ କରିଥିଲେ ।

ବିନ୍ଦୁସାଗର ପଙ୍କଉଦ୍ଧାର ପାଇଁ ମହତାବ ବାବୁ ଏବଂ ସତ୍ୟପ୍ରିୟ ବାବୁଙ୍କ ସହ ଆଲୋଚନା କଲି । ଏନ୍.ଏ.ସି. କାଉନ୍‌ସିଲ ମିଟିଙ୍ଗରେ ପାସ କରାଗଲା ଏବଂ ସରକାରଙ୍କର ଅନୁମତି ଅଣାଗଲା । ୧୯୭୮ ମସିହା ଫେବୃୟାରୀ ୨୭ ତାରିଖରେ ମହତାବଙ୍କ ସଭାପତିତ୍ୱରେ ସଭା ହେଲା । ଏହି ସଭାରେ ସତ୍ୟପ୍ରିୟ ବାବୁ, ଏଣ୍ଡାମେଣ୍ଟ କମିଶନର, ସୁରେଶ କୁମାର ରାଉତରାୟ ଏନ୍.ଏ.ସି.ର ସମସ୍ତ କାଉନ୍‌ସିଲର, ଇଂଜିନିୟର, ନିର୍ବାହୀ ଅଧିକାରୀ ଯୋଗ ଦେଇଥିଲେ । ଭୁବନେଶ୍ୱରର ବହୁ ବିଶିଷ୍ଟ ଲୋକ ଏବଂ ଯୁବକମାନେ ଯୋଗ ଦେଇଥିଲେ । କଥା ଉଠିଲା ବିନ୍ଦୁସାଗର ଲିଙ୍ଗରାଜଙ୍କ ସମ୍ପତ୍ତି, ଏନ.ଏ.ସି. କିପରି ଅର୍ଥ ଖର୍ଚ୍ଚ କରିବ ଉଙ୍ଘାଳିବାରେ ? ମହତାବ ବାବୁ କହିଲେ ଏନ୍.ଏ.ସି. ଏକଲକ୍ଷ ଟଙ୍କା ଲିଙ୍ଗରାଜ ଟ୍ରଷ୍ଟକୁ ଦେଇ ୨୦ ବର୍ଷ ପାଇଁ ବିନ୍ଦୁସାଗର ଲିଜ ନେଉ । ଏଥିରେ ଏଣ୍ଡାମେଣ୍ଟ କମିଶନର ରାଜି ହେଲେ । ସେହି ଦିନଠାରୁ ବିନ୍ଦୁସାଗର କାର୍ଯ୍ୟ ଆରମ୍ଭ ହେଲା । ଏହି କାର୍ଯ୍ୟର ପୂର୍ଣ୍ଣ ଦାୟିତ୍ୱ ନେଲେ ଇଂଜିନିୟର ଶିଶିର ମହାନ୍ତି, ଓଭରସିୟର ଆଦିକନ୍ଦ ଦାଶ । ନିର୍ବାହୀ ଅଧିକାରୀ ବିଷ୍ଣୁବାବୁ ପୂର୍ଣ୍ଣ ସହଯୋଗ କଲେ । ସୁନ୍ଦରପଦାର ଠିକାଦାର ଦିବାକର ଦାଶ ଏହି କାର୍ଯ୍ୟ କଲେ । ବିନ୍ଦୁସାଗର ତଳ ପୂରା ପଥର ଚଟାଣ ହୋଇଥିବାରୁ ବିନ୍ଦୁସାଗର ଉତ୍ତରପୂର୍ବ କଣରେ ବିନ୍ଦୁସାଗର ଭିତରକୁ ଟ୍ରକ୍ ଯିବା

ଆସିବା ପାଇଁ ରାସ୍ତା ହେଲା । ରାସ୍ତା କରାଯାଇ ୧୦ ହଜାର ଘନଫୁଟ କ୍ୟୁସେକ୍ ପଙ୍କ କଢ଼ାଯାଇପାରିଲା । କିନ୍ତୁ କାଉନ୍‌ସିଲ୍‌ର ସମୟ ୧୯୭୯ରେ ସରିଯିବାରୁ ବିନ୍ଦୁସାଗର ତାରିପଟ ପାଚେରି କାମ ହୋଇପାରିଲା ନାହିଁ ।

ତା ୩୦.୬.୧୯୭୬ ମସିହାରେ ମୁଁ ଲିଙ୍ଗରାଜ ଟ୍ରଷ୍ଟବୋର୍ଡର ସଭ୍ୟ ହେଲି । ଏହି ସମୟରେ ମୁରଲୀଧର ପ୍ରଧାନ ନିର୍ବାହୀ ଅଫିସର, ସୁଦର୍ଶନ ଦାଶ ମ୍ୟାନେଜର, ଓକିଲ ରବିନାରାୟଣ ମହାନ୍ତି ସଭାପତି ଥିଲେ । ସେତେବେଳେ ଲିଙ୍ଗରାଜ ମନ୍ଦିରର ଆର୍ଥିକ ପରିସ୍ଥିତି ଭଲ ନଥାଏ । ପ୍ରତି ଦିନ ବଜାରରୁ ଭଡ଼ା ଟଙ୍କା ଆଦାୟ ହେଲେ ଲିଙ୍ଗରାଜଙ୍କ ନୀତି ହୁଏ । ମୁରଲୀବାବୁ ସେପରି କାର୍ଯ୍ୟଦକ୍ଷ ଅଫିସର ନଥିଲେ । ଏନ୍.ଏ.ସି.ରୁ ଦିଆଯାଇଥିବା ଲକ୍ଷେ ଟଙ୍କାରୁ ବ୍ୟାଙ୍କରୁ ଲୋନ୍ ଆଣି ଅଶୋକାଅଷ୍ଟମୀକୁ ରଥ କଲେ । ଦ୍ୱିତୀୟ ବର୍ଷକୁ ରଥ କରିବା ପାଇଁ ବଡ଼ ଅସୁବିଧା ହେଲା । ଏଣ୍ଡାମେଣ୍ଟ କମିଶନର ନିଜେ ରଥ ଦାୟିତ୍ୱ ନେଲେ ଏବଂ ନିଜେ ରଥ କାମ ପାଖରେ ଠିଆ ହୋଇ ମୋତେ କହିଲେ ୨୫ ହଜାର ଟଙ୍କା ଯୋଗାଡ଼ କରି ଦେବାପାଇଁ । କାରଣ ଲିଙ୍ଗରାଜଙ୍କ ଫଣ୍ଡରେ ଟଙ୍କା ନଥିଲା । ମୁଁ ୨୫ ହଜାର ଟଙ୍କା ଯୋଗାଡ଼ କରି ଆଣି ଦେଲି, ରଥ ହେଲା । ମାସକ ପରେ କମିଶନର ମୋତେ ସେ ଟଙ୍କା ଦେଇଦେଲେ । ମୁରଲୀ ବାବୁ ଛୁଟି ନେଇ ରହିଗଲେ । କେହି ନିର୍ବାହୀ ଅଫିସର ଯୋଗ ଦେଇ ନଥାନ୍ତି । ମୋତେ ୬ ମାସ ନିର୍ବାହୀ ଅଧିକାରୀ ଅଫିସର କାମ ଚଳାଇବାକୁ ହେଲା । ମହେଶ୍ୱର ମିଶ୍ର (ଓ.ଏ.ଏସ୍.) ଙ୍କର ଲିଙ୍ଗରାଜଙ୍କର ନିର୍ବାହୀ ଅଫିସର ଆସିବାକୁ ଅର୍ଡର ହୋଇଥାଏ । ସେ ଭୁବନେଶ୍ୱର ଏସ୍.ଡି.ଓ. ଅଫିସରେ ମାଜିଷ୍ଟ୍ରେଟ୍ ଥାନ୍ତି । ଏସ୍.ଡି.ଓ. ୰ ସୁଧାଂଶୁ ରାଉତରାୟ ତାଙ୍କୁ ଛାଡ଼ିବାକୁ ରାଜି ହେଉନଥିଲେ । ମୁଁ ପୁରୀ କଲେକ୍ଟର ନରେନ୍ଦ୍ର ମହାପାତ୍ରଙ୍କୁ ଅନୁରୋଧ କରିବାରୁ ମହେଶ୍ୱର ବାବୁ କୋର୍ଟରେ ମାଜିଷ୍ଟ୍ରେଟ୍ କାମ ଏବଂ ଲିଙ୍ଗରାଜ ମନ୍ଦିର ନିର୍ବାହୀ ଅଫିସର କାମ କଲେ । ସେ ଜଣେ ଦକ୍ଷ ଅଫିସର । ନୂଆ ବୋର୍ଡ ହେଲା । ସେ ବୋର୍ଡରେ ସୁରେଶ କୁମାର ରାଉତରାୟ (ସେତେବେଳେ ସେ ଜଟଣୀ ବିଧାୟକ) ସଭାପତି, ମୁଁ, ୰ ଶରତ ମହାପାତ୍ର ୰ ଲୋକନାଥ ପୂଜାପଣ୍ଡା, ବିନାୟକ ମକଦମ, ଏସ୍.ଡି.ଓ. ଭୁବନେଶ୍ୱର, ଅଫିସର ଇନ୍‌ଚାର୍ଜ

ଲିଙ୍ଗରାଜ ପୋଲିସ ଷ୍ଟେସନ୍, ଲିଙ୍ଗରାଜ ଟ୍ରଷ୍ଟି ବୋର୍ଡ ସଭ୍ୟ ରହିଲୁ । ଯଜ୍ଞେଶ୍ୱର ଦାଶ (ଏଣ୍ଡାମେଣ୍ଟ କମିଶନର) ମହେଶ୍ୱର ବାବୁଙ୍କ କାର୍ଯ୍ୟରେ ସନ୍ତୁଷ୍ଟ ହୋଇ ପଚାଶ ହଜାର ଟଙ୍କା ଲିଙ୍ଗରାଜଙ୍କ ଯାତ୍ରା ପାଇଁ ଅନୁଦାନ ଦେଲେ । ଏରୋଡ୍ରମ୍ ତିଆରି ବେଳେ ଲିଙ୍ଗରାଜଙ୍କ ଜମି ଏରୋଡ୍ରମ୍‌ରେ ଯାଉଥିଲା । ସେ ଭୂମିଅର୍ଜନ ବାବଦ ଟଙ୍କା ସତ୍ୟପ୍ରିୟ ବାବୁଙ୍କ ନାଁରେ ବ୍ୟାଙ୍କରେ ଜମାଥିଲା । କାରଣ ସତ୍ୟପ୍ରିୟ ବାବୁ ଏରୋଡ୍ରମ୍ ତିଆରି ବେଳେ ଲିଙ୍ଗରାଜଙ୍କ ଟ୍ରଷ୍ଟିବୋର୍ଡର ସଭାପତି ଥିଲେ । ସେ ତାଙ୍କ ନାଁରେ ବ୍ୟାଙ୍କରେ ଅଶୀ ହଜାର ଟଙ୍କା ଜମା ରଖିଥିଲେ । ସେ ଲିଙ୍ଗରାଜ ଟ୍ରଷ୍ଟ ବୋର୍ଡକୁ ଦେଲେ । 'ଖୁଣ୍ଟ ଗୁଣେ ଘୋଡ଼ା ଡ଼ିଏଁ' । ମହେଶ୍ୱର ବାବୁ ଜଣେ ଦକ୍ଷ ଅଫିସର ହୋଇଥିବାରୁ ସେ ମୋତେ, ୰ ଶରତ ମହାପାତ୍ର, ଅନ୍ୟ ଟ୍ରଷ୍ଟି ମାନଙ୍କୁ ଏବଂ ସଭାପତି ଶ୍ରୀ ସୁରେଶ ରାଉତରାୟଙ୍କୁ ଲିଙ୍ଗରାଜଙ୍କର ଭିନ୍ନ ଭିନ୍ନ ଉନ୍ନତିମୂଳକ କାର୍ଯ୍ୟରେ ସହଯୋଗ ଲୋଡ଼ିଲେ । ସମସ୍ତ ଟ୍ରଷ୍ଟି ମେମ୍ବର ମାନେ ମହେଶ୍ୱର ବାବୁଙ୍କୁ ସହଯୋଗ କଲେ । ମହେଶ୍ୱର ବାବୁଙ୍କୁ ମୁଁ ସବୁବେଳେ ସହଯୋଗ କରେ । ଲିଙ୍ଗରାଜଙ୍କର ଡେଲାଙ୍ଗ ଥାନା ଅଗରସୁଆଁ ମଉଜାରେ ବହୁତ ଧାନଜମି, ନଡ଼ିଆ ବଗିଚା ଅଛି । ଜଟଣୀ ଥାନାରେ, ଭୁବନେଶ୍ୱରରେ ଓ ସୁନ୍ଦରପଦାରେ କିଛି ଧାନ ଜମି ନିଜ ଦଖଲରେ ଅଛି । ପୂର୍ବରୁ ମନ୍ଦିର ଅଫିସର ମାନଙ୍କ ଅପାରଗତାରୁ ଏହିସବୁ ଏରିଆରୁ ଧାନ ଆସିବା ବନ୍ଦ ହୋଇଯାଇଥିଲା । ଶ୍ରୀ ଜୀଉଙ୍କର ଦୈନିକ ନୀତି ପାଇଁ ଚାଉଳ କିଣାଯାଉଥିଲା । ମୁଁ, ୰ ଶରତ ମହାପାତ୍ର, ମହେଶ୍ୱର ବାବୁ ଅମାରଙ୍ଗ ଯାଇ ଚାଷୀମାନଙ୍କୁ ଡାକି ବୁଝାବୁଝି କରିବାରୁ ସେଠାରୁ ଧାନ ନଡ଼ିଆ ପୂର୍ବପରି ଆସିଲା । ଅନ୍ୟ ମଉଜାରୁ ମଧ୍ୟ ଧାନ ଆସିଲା । ଭୀମଟାଙ୍ଗି ହାଉସିଂ ବୋର୍ଡ ଜାଗା ଲିଙ୍ଗରାଜଙ୍କର ଥିଲା । ସେ ଜମି ହାଉସିଂ ବୋର୍ଡ ନେବାପାଇଁ ଲିଙ୍ଗରାଜଙ୍କ ତତ୍‌କାଳୀନ ଟ୍ରଷ୍ଟିବୋର୍ଡକୁ ମାଗିଥିଲା । କିନ୍ତୁ ସେତେବେଳର ଟ୍ରଷ୍ଟି ବୋର୍ଡ ଦେଇନଥିଲେ । ଲିଙ୍ଗରାଜଙ୍କର ଜମିଦାରୀ ଉଚ୍ଛେଦ ପରେ ହାଉସିଂ ବୋର୍ଡ ଓଡ଼ିଶା ସରକାରଙ୍କ ଠାରୁ ନେଲେ । ଏହି ଭୀମଟାଙ୍ଗୀର ପଥର ଖଣିରୁ ଲିଙ୍ଗରାଜ ମହାପ୍ରଭୁ ବାର୍ଷିକ ନିଲାମ କରି ଭଲ ଟଙ୍କା ପାଉଥିଲେ । ମହେଶ୍ୱର ବାବୁଙ୍କ ଚେଷ୍ଟାରେ ଓଡ଼ିଶାର ତତ୍‌କାଳୀନ ମୁଖ୍ୟମନ୍ତ୍ରୀ

ଜାନକୀ ବଲ୍ଲଭ ପଟ୍ଟନାୟକ ହାଉସିଂ ବୋର୍ଡ ସରକାରକୁ ଭୀମଟାଙ୍ଗୀ ବାବଦରେ ଦେଇଥିବା ପାଞ୍ଚ ଲକ୍ଷ ଟଙ୍କା ଲିଙ୍ଗରାଜ ଟ୍ରଷ୍ଟବୋର୍ଡକୁ ଦେଲେ ।

ଗୋଟେ ବଡ଼କାମ ହେଲା ରଥକାଠ । ଆଗେ ଫରେଷ୍ଟ ଡିପାର୍ଟମେଣ୍ଟ ଚନ୍ଦକା ଜଙ୍ଗଲରୁ ରଥ ତିଆରି ପାଇଁ ଦରକାର ହେଉଥିବା କାଠ ଦେଉଥିଲା । ଫରେଷ୍ଟ କର୍‌ପୋରେସନ୍ ହେବା ପରେ ରଥକାଠ ମିଳିଲା ନାହିଁ । ମହେଶ୍ୱର ବାବୁଙ୍କ ଚେଷ୍ଟାରେ ଫରେଷ୍ଟ କର୍‌ପୋରେସନ୍ ବର୍ତ୍ତମାନ ସମସ୍ତ ରଥକାଠ ଯୋଗାଉଛି ଏବଂ ରଥ ଚକ ପାଇଁ ଓଡ଼ିଶା ସରକାର ଦଶପଲ୍ଲାରୁ ଆମ୍ବକାଠ ଯୋଗାଉଛନ୍ତି ମୁଁ ଏ ବିଷୟରେ ମହେଶ୍ୱର ବାବୁଙ୍କ ସଙ୍ଗେ ପୂର୍ଣ୍ଣ ସହଯୋଗ କରିଥିଲି । ଏହି ସମୟରେ ଦିନେ ଏଣ୍ଡାମେଣ୍ଟ କମିଶନର ଶ୍ରୀ କାନୁନ୍‌ଗୋ ମୋତେ ଡାକି କହିଲେ ତୁମେ ମନ୍ଦିର ପାଇଁ ସବୁକାମ କରୁଛ । ତୁମେ ମନ୍ଦିର ଟ୍ରଷ୍ଟବୋର୍ଡର ସଭାପତି ହୁଅ । ତାଙ୍କ ସେକ୍ରେଟେରୀଙ୍କୁ ଡାକି ଅର୍ଡର କରିବାକୁ କହିଲେ । ମୁଁ କହିଲି ସୁରବାବୁ ସଭାପତି ଥାନ୍ତୁ । ଆମ ଭିତରେ କାହିଁକି ମନୋମାଳିନ୍ୟ ହେବ । ମୁଁ ଲିଙ୍ଗରାଜଙ୍କର କାର୍ଯ୍ୟ କରୁଛି । ଏହି କାର୍ଯ୍ୟ ମହେଶ୍ୱର ବାବୁ କରି ନଥିଲେ ବର୍ତ୍ତମାନ କାଠ ଯେପରି ଦୁର୍ମୂଲ୍ୟ ରଥ କରିବା କଷ୍ଟକର ହୁଅନ୍ତା । ମୁଁ ଲିଙ୍ଗରାଜଙ୍କ ଟ୍ରଷ୍ଟିବୋର୍ଡରେ ପ୍ରାୟ ଦଶବର୍ଷ ରହିଲି । ମହେଶ୍ୱର ବାବୁ ଅବସର ନେବା ପରେ ଆଉ ଲିଙ୍ଗରାଜଙ୍କର ନିର୍ବାହୀ ଅଫିସର ରହିବାକୁ ରାଜି ହେଲେ ନାହିଁ । ଏହି ଦଶବର୍ଷ ଭିତରେ ଲିଙ୍ଗରାଜଙ୍କର କୌଣସି ଜମି ବିକ୍ରୟ ନକରି ଶ୍ରୀଜୀଉଙ୍କର ଦୈନନ୍ଦିନ ନୀତି ଖର୍ଚ୍ଚ ତୁଲାଇ ଏବଂ ରଥରେ ଯାତ୍ରା ଏବଂ ଅନ୍ୟାନ୍ୟ ପର୍ବପର୍ବାଣିରେ ଖର୍ଚ୍ଚ କରି ଚଉଦ ଲକ୍ଷ ଟଙ୍କା ଠାକୁରଙ୍କ ନାମରେ ବ୍ୟାଙ୍କରେ ଜମା କରାଯାଇଥିଲା । କୋଡିଏ ଲକ୍ଷ କରିବାକୁ ମନସ୍ଥ କରିଥିଲୁ । ହୋଇ ପାରିଲା ନାହିଁ ।

**କପିଳନାଥଙ୍କ ସେବା ପୂଜା :-**

ବହୁ ଦିନଧରି ପ୍ରାୟ ୧୯୭୦ ମସିହା ବେଳକୁ କପିଳନାଥଙ୍କର ମଲ୍ଲିଆ ସେବକ, ଖୁଣ୍ଟିଆ ସେବକ (ବ୍ରାହ୍ମଣ) ସେବକ ମଧରେ ମାଲି ମକଦ୍ଦମା ଲାଗି କପିଳନାଥଙ୍କର ସେବାପୂଜା ବନ୍ଦ ହୋଇଗଲା । ଏହି ସମୟରେ ଠାକୁରଙ୍କର ଯାହା ସୁନା, ରୂପା ଅଳଙ୍କାର ଥିଲା ଚୋରି ହୋଇଗଲା । ପ୍ରାୟ

୧୦ ବର୍ଷ ଧରି ମକଦ୍ଦମା ଲାଗି ରହିଲା ।

୧୫.୧୨.୧୯୮୧ ମସିହାରେ ନୂଆ ଟ୍ରଷ୍ଟି ବୋର୍ଡ ଗଢ଼ାଗଲା । ଲିଙ୍ଗରାଜଙ୍କର ଟ୍ରଷ୍ଟିବୋର୍ଡର ମେମ୍ବରମାନେ କପିଳନାଥଙ୍କର ଟ୍ରଷ୍ଟି ବୋର୍ଡରେ ରହିଲେ । ଲିଙ୍ଗରାଜଙ୍କର ନିର୍ବାହୀ ଅଧିକାରୀ ଶ୍ରୀ ମହେଶ୍ବର ମିଶ୍ର କପିଳନାଥଙ୍କ ଟ୍ରଷ୍ଟି ବୋର୍ଡରେ ରହିଲେ । କମିଶନର ଏ ଯଜ୍ଞେଶ୍ବର ଦାଶ ମୋତେ ମ୍ୟାନେଜିଂ ଟ୍ରଷ୍ଟି କଲେ । ସେ ମହାଶୟ ଅର୍ଡର କଲେ ଟ୍ରଷ୍ଟି ବୋର୍ଡ ବଦଳିବ । କିନ୍ତୁ ଯେ ପର୍ଯ୍ୟନ୍ତ କମିଶନର ଅର୍ଡର ନକରିଛନ୍ତି ମୁଁ ମ୍ୟାନେଜିଂ ଟ୍ରଷ୍ଟି ରହିବି ।

ମୋର ବନ୍ଧୁମାନେ କହିଲେ, କପିଳେଶ୍ବରଙ୍କ ସେବକ ମାନଙ୍କ ମଧ୍ୟରେ ମାଲି ମକଦ୍ଦମା ଲାଗି ବହୁତ ଗୋଳମାଳ ହେଉଛି ତୁ ସେଠାରେ କ'ଣ କରିବୁ । ମୁଁ ଭାବିଲି, ମୁଁ କେବେ ଇଚ୍ଛା କରିନଥିଲି କପିଳନାଥଙ୍କର ମ୍ୟାନେଜିଂ ଟ୍ରଷ୍ଟି ହେବା ପାଇଁ । ମୋ ଦ୍ୱାରା କିଛି ହୋଇପାରିବ ବୋଲି ଠାକୁର ମୋତେ ଏ ମନ୍ଦିରରେ ମ୍ୟାନେଜିଂ ଟ୍ରଷ୍ଟି କରିଛନ୍ତି । ଆମ ବଂଶ କପିଳନାଥଙ୍କୁ ମାନୁ । ପ୍ରଥମ ଏନ୍.ଏ.ସି. ଭୋଟରେ କପିଳେଶ୍ବର ଭୁବନେଶ୍ବରର ଗୋଟେ ୱାର୍ଡ ଥିଲା । ମୁଁ କପିଳେଶ୍ବରରୁ ବହୁତ ଭୋଟ ପାଇ ବିଜୟୀ ହୋଇଥିଲି । କପିଳେଶ୍ବର ମ୍ୟାନେଜିଂ ଟ୍ରଷ୍ଟି ହେବା ପରେ ମୁଁ ଟ୍ରଷ୍ଟି ବୋର୍ଡର ମେମ୍ବର କପିଳନାଥଙ୍କର ଖୁଣ୍ଟିଆ ମଲିଆ ଓ ଗ୍ରାମର ମୁଖିଆମାନଙ୍କୁ ନେଇ କପିଳନାଥଙ୍କ ମନ୍ଦିର ବେଢ଼ାରେ ବହୁବାର ମିଟିଙ୍ଗ କଲି । କିଛି ଫଳ ହେଲା ନାହିଁ ।

ଶେଷରେ ଡକ୍ଟର ହରେକୃଷ୍ଣ ମହତାବଙ୍କୁ କହିଲି । ସେ ମହାଶୟ ମୋତେ ଏନ୍.ଏ.ସି. ଭାଇସ ଚେୟାରମ୍ୟାନ୍, ଚେୟାରମ୍ୟାନ୍ ଠାରୁ ସବୁ ମହତ କାମରେ ସାହାଯ୍ୟ କରନ୍ତି ।

ଭଲ ବେଳ ଆସିଲା । ମହତାବ ବାବୁଙ୍କ ପୌରୋହିତ୍ୟରେ ଏକାମ୍ର ନିବାସରେ ମିଟିଙ୍ଗ ହେଲା । ମହତାବ ବାବୁ, କମିଶନର, ଏ.ଡି.ଏମ୍, ଏସ୍.ପି. ମଲ୍ଲିଆ ଖୁଣ୍ଟିଆଙ୍କ ଓକିଲ, ଟ୍ରଷ୍ଟି ବୋର୍ଡ ମେମ୍ବର, ମୁଖିଆ ମୁଖିଆ ଖୁଣ୍ଟିଆ ମଲ୍ଲିଆ ସେବକମାନଙ୍କୁ ଡାକି ଦୁଇପକ୍ଷ ମକଦ୍ଦମା ଉଠାଇବାକୁ ରାଜି କରାଇଲେ ଏବଂ କପିଳନାଥଙ୍କ ନୀତି ପୂର୍ବପରି ଠିକ୍ ଭାବରେ କରିବା ପାଇଁ ରାଜି ହେଲେ ।

ଠାକୁରଙ୍କର ଜମାରେ ପଇସା ନଥାଏ । ମୁଁ ହାତରୁ ଟ ୧୦୧/- ଦେଇ ଷ୍ଟେଟ୍‌ବ୍ୟାଙ୍କରେ ଗୋଟେ ଜମା ଖାତା ଖୋଲିଲି । ପ୍ରଥମ ବର୍ଷ କମିଶନର ମହାଶୟ ଦଶହଜାର ଟଙ୍କା ଅନୁଦାନ ଦେଲେ । ଠାକୁରଙ୍କର ଘିଅଦୀପ, ଭେଟ ପ୍ରଭୃତି ନିଲାମ କଲି ସେଥିରୁ କିଛି ଟଙ୍କା ମିଳିଲା । ଯେତେ ବେଳେ ନିଅଣ୍ଟ ହୁଏ ଲିଙ୍ଗରାଜଙ୍କ ଟ୍ରଷ୍ଟି ବୋର୍ଡରୁ ଟଙ୍କା ଧାର ନେଇ ନୀତି ଚଳାଏ । ଠାକୁରଙ୍କର ଦୈନିକ ନୀତି, ଯାତ୍ରା ପ୍ରଭୃତି ଭଲ ଭାବରେ ଚାଲିଲା । ବାହାଦଲପୁରରେ ଠାକୁରଙ୍କର ଜମିରୁ କିଛି ଜମି ରେଳ ଡବଲ ଲାଇନରେ ଯାଇଥିଲା । ସେ ବାବଦରେ ଅଠର ହଜାର ଟଙ୍କା ମୁଖ୍ୟ ଷ୍ଟେଟ୍‌ବ୍ୟାଙ୍କରେ କମିଶନର ରଖିଥିଲେ । ସେ ଟଙ୍କା ମିଳିଲା ।

ମାନ୍ୟବର ମନ୍ତ୍ରୀ ୰ ବସନ୍ତ ବିଶ୍ୱାଳ ପଚାଶ ହଜାର ଟଙ୍କା ଦେଇଥିଲେ । ତାକୁ ବ୍ୟାଙ୍କରେ ସ୍ଥାୟୀ ଜମା କରାଗଲା । ସେବା ପୂଜା କାର୍ଯ୍ୟରେ ସବୁ ମଲିଆ ସେବକ ଖୁଣ୍ଟିଆ ସେବକ ସହଯୋଗ କଲେ । ବିଶେଷତଃ ହରି ମଲିଆ, ରାମ ମଲିଆ, ହଳଧର ମଲିଆ, ପଦ୍ମଚରଣ ସାହୁ, ବୈକୁଣ୍ଠ ଖୁଣ୍ଟିଆ ବିଶେଷ ସାହାଯ୍ୟ କଲେ ।

ଏଣ୍ଡାମେଣ୍ଟ କପିଳନାଥଙ୍କ ମନ୍ଦିର ନେବା ପୂର୍ବରୁ ମଲ୍ଲିଆ ମକଦମ ମାନେ ମାରଫତଦାର ଥିଲେ । ବାହାଦଲପୁରରେ ୧୬ ଏକର ଜମିକୁ ତାଙ୍କ ନାମରେ କରିବା ପାଇଁ ଚକବନ୍ଦିରେ କେସ୍ ଲଢ଼ିଲେ । ଚକବନ୍ଦି କମିଶନର କୋର୍ଟର ମୁଁ ନିଜ ଖର୍ଚ୍ଚରେ ଓକିଲ ଦେଇ ଲଢ଼ିଲି । ମୋତେ ବହୁତ କଷ୍ଟ କରିବାକୁ ହେଲା । ମକଦମଙ୍କ ମକଦ୍ଦମା ଡିସ୍‌ମିସ ହେଲା । ସେ ୧୬ ଏକର ବାହାଦଲପୁର ଜମିର ଆୟ ଚାଷୀମାନେ ଦେଲେ ନାହିଁ । ଚାଷୀମାନଙ୍କୁ କପିଳନାଥଙ୍କ ନିକଟକୁ ଡାକି ବୁଝାଇଲି, କିଛି ଫଳ ହେଲା ନାହିଁ । ଏଣ୍ଡାମେଣ୍ଟ କମିଶନରଙ୍କ କୋର୍ଟରେ ସେ ୧୬ ଏକର ଜମି ବିକିବାପାଇଁ ଦରଖାସ୍ତ କଲି । ଜମି ବିକିବା ପାଇଁ କମିଶନର ଅର୍ଡର କଲେ । ଓଡ଼ିଶା ସରକାରଙ୍କ ଲ' ଡିପାର୍ଟମେଣ୍ଟ ମଞ୍ଜୁର ପାଇଁ କମିଶନର ପଠାଇଲେ । ଅର୍ଡର ଆସିବାରେ ଡେରି ହେଲା । ଯେଉଁ କିରାଣୀ ଲ' ଡିପାର୍ଟମେଣ୍ଟରେ ଏ ଫାଇଲ୍ ଡିଲ୍ କରେ ତାଙ୍କୁ ଦେଖାକରିବାକୁ ଏଣ୍ଡାମେଣ୍ଟ ଇନ୍‌ସପେକ୍ଟର ମୋତେ କହିଲେ । ମୁଁ ସେତକ

କରିପାରିଲି ନାହିଁ । ପରେ ନରସିଂହ ମିଶ୍ର ଲ' ବିଭାଗ ମନ୍ତ୍ରୀ ଥିଲାବେଳେ କପିଳନାଥଙ୍କର ଦର୍ଶନକୁ ସସ୍ତ୍ରୀକ ଆସିଥିଲେ । ତାଙ୍କୁ କପିଳନାଥଙ୍କ ମନ୍ଦିର ଅବସ୍ଥା କହିଲି ଏବଂ ଏହି ଜମି ବିକ୍ରି ପାଇଁ ଅନୁମତି ଦେବାକୁ ଅନୁରୋଧ କଲି । ସେ ମହାଶୟ ଏ ଜମି ବିକ୍ରୟ ପାଇଁ ଅନୁମତି ଦେଇଦେଲେ ।

ଠାକୁରଙ୍କ ନୀତି ପାଇଁ ମଲିଆ ସେବକ ମାନେ ମନ୍ଦିରରୁ ଟଙ୍କା ନେଇ ଠିକ୍ ସମୟରେ ସରଞ୍ଜାମ ଯୋଗାଇ ଦିଅନ୍ତି । କେତେ ଜଣ ଖୁଣ୍ଟିଆ ସେବକ ଠିକ୍ ସମୟରେ ନୀତି କରି ପାରନ୍ତି ନାହିଁ । ତାର କାରଣ ହେଲା, ସେମାନଙ୍କର କପିଳନାଥଙ୍କ ପାଖରେ ସଂସାର ଚଳିଲା ପରି କିଛି ଆୟ ନାହିଁ । ତେଣୁ ସେମାନେ ଲିଙ୍ଗରାଜ ମନ୍ଦିରକୁ ଆସି ଅନ୍ନ ରାନ୍ଧି ଭଲ ଦି'ପଇସା ଆୟ କରନ୍ତି । ତେଣୁ ଲିଙ୍ଗରାଜ ମନ୍ଦିରରୁ ଯାଇ କପିଳନାଥଙ୍କର ନୀତି କରନ୍ତି । ଦୁଇ ଘର ଖୁଣ୍ଟିଆ ସେବକ ଠାକୁରଙ୍କ ପୂଜା ଜାଣି ନଥିଲେ । ସେମାନଙ୍କୁ ଯେତେ କହିଲେ ମଧ ପୂଜା ଶିଖିଲେ ନାହିଁ । ଅନ୍ୟ ଖୁଣ୍ଟିଆ ସେବକମାନେ ବହୁଦିନ ପର୍ଯ୍ୟନ୍ତ ତାଙ୍କ ପାଳି ଚଳାଇଲେ । ଯେଉଁ ଖୁଣ୍ଟିଆ ସେବକ ପାଳି ଶିଖିଲେ ନାହିଁ ଅନ୍ୟ ଯେଉଁ ଖୁଣ୍ଟିଆ ସେବକ ତାଙ୍କ ପାଳି ଚଳାଇଲେ ସେଥିପାଇଁ ସେ ଦୁଇଘର ଖୁଣ୍ଟିଆ ସେବକ ସେମାନଙ୍କୁ କିଛି ପାରିଶ୍ରମିକ ଦେଲେ ନାହିଁ କି ମନ୍ଦିରର ସେପରି ସ୍ୱଚ୍ଛଳ ଅବସ୍ଥା ନଥିଲା ଟଙ୍କା ଦେଇ ପାଳି କରିବାକୁ । ଆଉ ମଧ ସେ ଦୁଇଘର ଖୁଣ୍ଟିଆ ସେବକଙ୍କର ଅନ୍ୟ ଖୁଣ୍ଟିଆ ସେବକଙ୍କ ସଙ୍ଗେ ସଦ୍‌ଭାବ ନଥିଲା । ଅନେକ ଥର ଲିଙ୍ଗରାଜଙ୍କ ପୂଜାପଣ୍ଡାଙ୍କୁ ନେଇ ମୁଁ ସେବା କାର୍ଯ୍ୟ ଚଳାଇଲି । ସବୁ ସମୟରେ କପିଳନାଥଙ୍କ ସେବା ପୂଜା ଯାନିଯାତ୍ରା ପାଇଁ ଚିନ୍ତିତ ହେବାକୁ ପଡ଼େ । ହେଲେ ମୁଁ ଠାକୁରଙ୍କ କାମ କରୁଛି ଏଇଆ ଭାବି ସବୁବେଳେ ସବୁକାମ କରିଯାଏ । ଗୋଟେ କଥା ମନେ ପଡୁଛି, ଯେଉଁ ଦିନ କପିଳେଶ୍ୱରରେ ହାଣ କାଟ ହେଲା ଜଣେ ପୋଲିସ୍ ମରିଗଲେ । ଠାକୁରଙ୍କର ନୀତି ବନ୍ଦ ହୋଇଯିବ । ସେ ଦିନ ଏବଂ ତା'ପରଦିନ ଲିଙ୍ଗରାଜ ଥାନାରୁ ଅନୁମତି ନେଇ କପିଳେଶ୍ୱର ଗଲି । ମୋତେ ଭାରି ଭୟ ଲାଗୁଥାଏ । ପୋଲିସ୍ ଯାହାକୁ ଦେଖୁଥାନ୍ତି ବାଡଉଥାନ୍ତି । ମୁଁ କପିଳନାଥଙ୍କୁ ଡ଼ାକି ରାତି ୮ଟାରେ କପିଳେଶ୍ୱର ଯାଇ ମନ୍ଦିରରେ ବସି ଠାକୁରଙ୍କ ନୀତି କଲି ।

୧୯୯୦ ମସିହା ସାବିତ୍ରୀ ବ୍ରତ ପୂର୍ବ ରାତିରେ ବହୁତ ଚେଷ୍ଟା କଲି କେହି ଖୁଣ୍ଟିଆ ସେବକ ସାବିତ୍ରୀ ଦିନ ନୀତି କରିବାକୁ ରାଜି ହେଲେ ନାହିଁ। ଯେଉଁ ଦୁଇଜଣ ଖୁଣ୍ଟିଆ ସେବକ ପୂଜା ଜାଣି ନଥିଲେ ତାଙ୍କରି ପାଳି ପଡ଼ିଲା । ଯଦିଚ ସାବିତ୍ରୀ ପୂଜାରେ କାଳିକାଙ୍କୁ ପୂଜା କରି ଖୁଣ୍ଟିଆ ସେବକ ଭଲ ଦକ୍ଷିଣା ପାଆନ୍ତି ।

ସୁରେଶ କୁମାର ରାଉତରାୟ ଏଖବର ପାଇ ଭୁବନେଶ୍ୱରର କେତେ ଜଣ ଯୁବ ସେବକଙ୍କୁ ନେଇ କପିଳେଶ୍ୱର ଯାଇ ବହୁତ ଚେଷ୍ଟା କଲେ କିନ୍ତୁ, କେହି ଖୁଣ୍ଟିଆ ସେବକ ପୂଜା କରିବାକୁ ରାଜି ହେଲେ ନାହିଁ । ସେ ଦିନ ମୁଁ ଘରକୁ ରାତି ୨ଟାରେ ନିରାଶ ହୋଇ ଫେରିଲି । ଘରେ ମୋର ପିଲାମାନେ ମୋତେ ବାଧ କଲେ ତୁମେ ଏତେ ଦିନ ବୁଝିଲ ଏବେ ଆଉ ବୁଝିବା ଦରକାର ନାହିଁ । କାଲି ଇସ୍ତଫା ଦିଅ । ମୋତେ ବି ଭାରି କଷ୍ଟ ହେଲା । ପରଦିନ ଯାଇ ଏଣ୍ଡାମେଣ୍ଟ କମିଶନଙ୍କୁ ଦେଖାକରି ମୋର ଶାରୀରିକ ଅସୁସ୍ଥତା ଲେଖି କାଳିକା କପିଳନାଥଙ୍କୁ ମୁଣ୍ଡିଆ ମାରି କପିଳନାଥଙ୍କ ମ୍ୟାନେଜିଂ ଟ୍ରଷ୍ଟିରୁ ଇସ୍ତଫା ଦେଲି ।

୧୯୫୦ରେ ନନାଙ୍କ ମୃତ୍ୟୁ ପରେ ପରେ ମୋ ଉପର ଭାଇ କୈଳାସଚନ୍ଦ୍ର ବର୍ଷକ ପରେ ଚାଲିଗଲେ । କୈଳାସ ଭାଇନାଙ୍କ ଚିନ୍ତାରେ ବର୍ଷକ ପରେ ବୋଉ ଚାଲିଗଲା । ସାନ ବାପା କବିରାଜ ବାଞ୍ଛାନିଧିଙ୍କ ଖାଇବା ବୋଉ ବୁଝୁଥିଲା । ବାପା ନିରାମିଷାଶୀ ଥିଲେ । ପିଆଜ ରସୁଣ ଖାଆନ୍ତି ନାହିଁ । ବୋଉ ମଲାପରେ ବାପା ଭାଙ୍ଗି ପଡ଼ିଲେ । ସେ ୧୯୫୩ ମସିହାରେ ଚାଲିଗଲେ । ବାସୁଭାଇନା ତାଙ୍କ କବିରାଜି ଛଡ଼ା ଜମିବାଡ଼ି କଥା କିଛି ବୁଝନ୍ତି ନାହିଁ । ବଡ଼ଭାଇନା ପାଠ ପଢ଼ି ଚାକିରି କଲେ, ମୁଁ ଚାକିରି କଲି । କୈଳାସ ଭାଇନା ନନାଙ୍କ ଅନ୍ତେ ଧର୍ମଶାଳା ଜମିବାଡ଼ି କଥା ବୁଝୁଥିଲେ । ଆମେ ତିନି ଭାଇ କେଉଁ ମଉଜାରେ କେତେ ଜମି ଅଛି କିଛି ଜାଣିନଥିଲୁ, କି ଜମି ଦେଖି ନଥିଲୁ । ମୁଁ ଭୁବନେଶ୍ୱର ଫାର୍ମରେ ଚାକିରି କରିଥିଲି । ମୋତେ ସକାଳୁ ସନ୍ଧ୍ୟା ପର୍ଯ୍ୟନ୍ତ ଫାର୍ମରେ ରହିବାକୁ ପଡ଼େ । ବଡ଼ ଭାଇନା ଘରର ସମସ୍ତ ବିଷୟ ବୁଝୁଥିଲେ ।

ତା ୧୯.୪.୧୯୮୧ ରାତି ଆମ ପାଇଁ କାଳ ରାତି ହେଲା । ବଡ଼ଭାଇନା ବଜାର ଜଳଖିଆ ମଗାଇ ଖାଆନ୍ତି ନାହିଁ । ସେ ଦିନ ଆମ ବଡ଼

ନାନୀ ୰ ଗୌରୀଦେବୀ (ସବୁ ଭାଇଙ୍କଠାରୁ ବଡ଼) ଆସିଥିଲେ । ଜଳଖିଆ ମଗାଇ ଭାଇ ଭଉଣୀ ଖାଇଲେ । ରାତି ୮ଟାରେ ଭାଇନାଙ୍କ ବଡ଼ପୁଅ ପ୍ରସନ୍ନ ସବୁଦିନ ପରି ସେଦିନ ଛେନା ଦେଇଥିଲା ତାକୁ ଖାଇଦେଲେ । ପ୍ରତିଦିନ ଯେତିକି କ୍ଷୀର ପିଅନ୍ତି ପିଇଦେଲେ । ହଠାତ୍ ରକ୍ତଚାପ ବଢ଼ିଗଲା । ମୋତେ ଡକାଇ ପଠାଇଲେ, ମୁଁ ଆସିଲି । ଭାଇନା ବସିଲେ କିନ୍ତୁ କିଛି କହିପାରିଲେ ନାହିଁ । ସଙ୍ଗେ ସଙ୍ଗେ ଚିକିତ୍ସା କରାଗଲା । ସକାଳେ ମ୍ୟୁନିସିପାଲିଟି ଡାକ୍ତରଖାନାକୁ ନେଲୁ । କିଛି ଫଳ ହେଲାନାହିଁ । ତା ୨୦.୪.୧୯୮୧ ସକାଳ ୮ଟାରେ ଆମକୁ ଶୋକ ସାଗରରେ ଭସାଇ ଚିର ନିଦ୍ରାରେ ଶୋଇଗଲେ । ତାଙ୍କର ମୃତ୍ୟୁଖବର ସଙ୍ଗେ ସଙ୍ଗେ ସମଗ୍ର ଭୁବନେଶ୍ୱରରେ ବ୍ୟାପିଗଲା । ଖବର ପାଇ ଡକ୍ଟର ହରେକୃଷ୍ଣ ମହତାବ, ଓଡ଼ିଶାର ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ, ଓଡ଼ିଶା ସରକାରଙ୍କର ମୁଖ୍ୟଶାସନ ସଚିବ ଶ୍ରୀ ସୁଧାଂଶୁ ମୋହନ ପଟ୍ଟନାୟକ, ଅତିରିକ୍ତ ଶାସନ ସଚିବ ବିମଳ କିଶୋର ମିଶ୍ର, ଭୁବନେଶ୍ୱରର ବହୁତ ବିଶିଷ୍ଟ ଲୋକ, ପଣ୍ଡିତ ୰ ନୀଳମଣି ମିଶ୍ର, ଡକ୍ଟର ଭଗବାନ ପଣ୍ଡା ଓ ରାଜ୍ୟ ସଂଗ୍ରହାଳୟର ଅଫିସର ମାନେ ପହଞ୍ଚିଗଲେ । ପଣ୍ଡିତ ୰ ନୀଳମଣି ମିଶ୍ର, ଜାନକୀ ବାବୁଙ୍କୁ ଗୋଟେ ସୋଭେନିୟର (Souvenir) ସରକାରଙ୍କ ତରଫରୁ ବାହାର କରିବା ପାଇଁ ଅନୁରୋଧ କଲେ । ଜାନକୀ ବାବୁ କହିଲେ ଯଦି କେଦାରବାବୁଙ୍କ ୧୧ ଦିନ ସୋଭେନିୟର ବାହାର କରିପାରିବ କର । ମୃତ୍ୟୁର ପରଦିନ ମୁଁ ସେତେବେଳେ ଓଡ଼ିଶା ସରକାରଙ୍କର କ୍ରୀଡ଼ା, ପର୍ଯ୍ୟଟନ ଏବଂ ସଂସ୍କୃତି ବିଭାଗର ଶାସନ ସଚିବ ଶ୍ରୀ ଅଓଧ ନାରାୟଣ ତିଓ୍ୱାରୀଙ୍କୁ ଦେଖା କରି ଜାନକୀ ବାବୁ ସୋଭେନିୟର ବାହାର କରିବାକୁ କହିଥିବା କଥା କହିଲି । ତିଓ୍ୱାରୀ ସାହେବ କହିଲେ ଯଦି ଜାନକୀ ବାବୁ ମୋତେ ଫୋନ୍‌ରେ ସୋଭେନିୟର ସରକାରଙ୍କ ତରଫରୁ ବାହାର କରିବା ପାଇଁ କହିବେ ମୁଁ ଅର୍ଡର କରିଦେବି । ମୁଁ ତିଓ୍ୱାରୀ ସାହେବଙ୍କ ଘରୁ ଜାନକୀ ବାବୁଙ୍କ ସରକାରୀ ବାସଭବନକୁ ଗଲି । ଯୋଗକୁ ମୋର ଜାନକୀ ବାବୁଙ୍କ ଦେଖା ମିଳିଗଲା ଏବଂ ସେ ଫୋନ୍‌ରେ ତିଓ୍ୱାରୀ ସାହେବଙ୍କୁ ଫୋନ୍‌ରେ ଅର୍ଡର କରିଦେଲେ ।

ପଣ୍ଡିତ ୰ ନୀଳମଣି ମିଶ୍ର, ଡକ୍ଟର ଭଗବାନ ପଣ୍ଡା ଦିନ ରାତି ଅକ୍ଲାନ୍ତ ପରିଶ୍ରମ କରି ସୋଭେନିୟର ପ୍ରକାଶ କଲେ ।

ତା ୨୦.୪.୧୯୮୩ ମସିହାରେ ବଡ଼େଇବାଙ୍କରେ ଭାଇନାଙ୍କର ଦ୍ୱିତୀୟ ବାର୍ଷିକ ଶ୍ରାଦ୍ଧସଭା ହୋଇଥିଲା । ଏହି ସଭାରେ ଡକ୍ଟର ୰ ହରେକୃଷ୍ଣ ମହତାବ, ୰ ସତ୍ୟପ୍ରିୟ ମହାନ୍ତି, ଡକ୍ଟର ପ୍ରଫେସର ୰ କୁଞ୍ଜବିହାରୀ ଦାଶ ଯୋଗ ଦେଇଥିଲେ । ଏହି ସଭାରେ ସୋଭେନିୟର ଉନ୍ମୋଚନ କରାଗଲା ।

ପଣ୍ଡିତ ନୀଳମଣି ମିଶ୍ର ଭାଇନାଙ୍କର ଜୀବନୀ ଲେଖିବା ପାଇଁ ମୋତେ କହିଲେ । ମୁଁ ତାଙ୍କର ସମସ୍ତ ଡାଏରୀ ପଣ୍ଡିତଙ୍କୁ ଯୋଗାଇ ଦେଲି । ପଣ୍ଡିତ ମହାଶୟ ବହୁ ପରିଶ୍ରମ କରି ଭାଇନାଙ୍କର ଜୀବନୀ ଲେଖିଲେ । ତା ୨୦.୪.୧୯୯୬ରେ ଭାଇନାଙ୍କ ଶ୍ରାଦ୍ଧ ସଭାରେ ଉନ୍ମୋଚିତ ହୋଇଥିଲା ।

# ମୋ'ର ସଙ୍ଗଠନ ସମ୍ପୃକ୍ତି

## କେଦାରନାଥ ଗବେଷଣା ପ୍ରତିଷ୍ଠାନ :-

ପଣ୍ଡିତ ନୀଳମଣି ମିଶ୍ର ସର୍ବଭାରତୀୟ ସଂସ୍କୃତ କମିଟିର ମେମ୍ବର ଥିଲେ । ଭାଇନାଙ୍କ ମୃତ୍ୟୁ ପରେ ପଣ୍ଡିତେ ଦିଲ୍ଲୀ ଯାଇଥିଲେ ସେ ସଭାରେ ଯୋଗ ଦେବାପାଇଁ । ସେଠାରେ ଶ୍ରୀମତୀ କପିଳ ବାତ୍ସାୟନଙ୍କ ସଙ୍ଗେ ଦେଖାକଲେ । ସେତେବେଳେ ଶ୍ରୀମତୀ କପିଳ ବାତ୍ସାୟନ ଭାରତ ସରକାରଙ୍କର ସଂସ୍କୃତି ବିଭାଗ ଅତିରିକ୍ତ ଶାସନ ସଚିବ ଭାବରେ କାର୍ଯ୍ୟ କରୁଥିଲେ । କପିଳ ବାତ୍ସାୟନ ଭୁବନେଶ୍ୱର ଆସିଲେ ଆମ ଘରକୁ ଆସି ଜୟଦେବଙ୍କ ବିଷୟରେ ବହୁ ସମୟ ଧରି ଭାଇନାଙ୍କ ସଙ୍ଗେ ଆଲୋଚନା କରନ୍ତି । ସେ ମହାଶୟା ପଣ୍ଡିତଙ୍କୁ କହିଲେ ତୁମେ ଭୁବନେଶ୍ୱରରେ କେଦାରବାବୁଙ୍କ ନାମରେ ଗୋଟେ ଅନୁଷ୍ଠାନ କଲେ ମୁଁ ସାହାଯ୍ୟ କରିବି ।

ପଣ୍ଡିତ ମହାଶୟ ଦିଲ୍ଲୀରୁ ଫେରି ମୋତେ କହିଲେ ଏବଂ ବଡ଼ ମଝିଆଁ ଭାଇନା ବାସୁଦେବ ମହାପାତ୍ର, ବଡ଼ଭାଉଜଙ୍କୁ ଏବଂ ପିଲାମାନଙ୍କୁ କହିଲେ । ବର୍ତ୍ତମାନ ଯେଉଁଠାରେ ଗବେଷଣା ଅନୁଷ୍ଠାନ ତିଆରି ହୋଇଛି ସେଠାରେ

ଆମ ବଂଶର ଏ ୦.୪୦୦ ଡିସିମିଲି ସ୍ଥିତିବାନ ଜମି ଥିଲା । ସେହି ଜମିରୁ ଦକ୍ଷିଣ ପଟେ ଏ ୦.୦୬୦ ଡିସିମିଲ ଜମି ଗବେଷଣା ନାମରେ ତା ୨୬.୩.୮୪ ମସିହାରେ ୧୭୮୨ ନମ୍ବର ରେଜିଷ୍ଟ୍ରେସନ୍ ଦଲିଲ ବଳରେ ଗବେଷଣା ପ୍ରତିଷ୍ଠାନକୁ ଦିଆଗଲା । ମୁଁ ଗବେଷଣା ଘରର ପ୍ଲାନ୍ କରାଇ ବି.ଡି.ଏ. ର ମଞ୍ଜୁର ଆଣିଲି । ଏହି ଜାଗାଟି ଗୋଟେ ୫/୬ ଫୁଟ ଖାଲବିଲ ଥିଲା । ଆମର କୋଠରେ ୧୨ ହଜାର ଟଙ୍କା ଥିଲା । ବାପୁଭାଇନା, ବଡ଼ଭାଉଜ ଏବଂ ପିଲାମାନଙ୍କୁ ପଚାରି ମୁଁ ଏହି ଟଙ୍କା ଗବେଷଣା ଘର କାମ ପାଇଁ ଦେଲି । ତା ୧୫.୫.୧୯୮୪ ମସିହା ଅକ୍ଷୟ ତୃତୀୟା ଦିନ ଘର କାମ ଆରମ୍ଭ ହେଲା । ପଣ୍ଡିତେ ମହାଶୟ ଅଫିସରୁ ୪ଟା ପରେ କାମ ଦେଖିବାକୁ ଆସନ୍ତି ମୁଁ ସବୁ ସମୟରେ କାମ ଉପରେ ରହି କାମ ତତ୍ତ୍ୱାବଧାନ କରେ । ଭାରତ ସରକାର ଏହି ଗବେଷଣା ଘର ପାଇଁ ଏକଲକ୍ଷ ପନ୍ଦର ହଜାର ଟଙ୍କା ମଞ୍ଜୁର କଲେ । ପ୍ରଥମ କିସ୍ତିରେ ଯାହା ଟଙ୍କା ମିଳିଥିଲା ସେଥିରେ ୬/୭ ଫୁଟ ଘର କାନ୍ଥକାମ ହୋଇଗଲା । ମଝିରେ କିଛିଦିନ ଅନୁଦାନ ମିଳିବାରେ ଡେରି ହେଲା । ପରେ ପୁରା ଅନୁଦାନ ମିଳିବାରୁ ତଳ ମହଲାର ପୁରା କାମ ହୋଇଗଲା । ମୋର ଅନୁରୋଧ ରକ୍ଷାକରି ଭୁବନେଶ୍ୱର ମ୍ୟୁନିସିପାଲଟି ଇଂଜିନିୟର ଶ୍ରୀଯୁକ୍ତ ପୀତବାସ ପଣ୍ଡା ମଝିରେ ମଝିରେ ଆସି କାମ ଦେଖି ପରାମର୍ଶ ଦିଅନ୍ତି । ତା ୧.୫.୧୯୮୭ ଅକ୍ଷୟ ତୃତୀୟା ଦିନ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ଜାନକୀ ବଲ୍ଲଭ ପଟ୍ଟନାୟକ ଏହି ଘର ଉଦ୍‌ଘାଟନ କଲେ । ଭାଇନା ସଂଗ୍ରହ କରିଥିବା ସମସ୍ତ ବହି, ପୁରାଣ, ପତ୍ର ପତ୍ରିକା, ପୋଥି ଚାରିଟା ବଡ଼ ବଡ଼ କାଠ ଆଲମାରି ତାଙ୍କ ଟେବୁଲ୍, ଚେୟାର, କାନ୍ଥଘଣ୍ଟା ପ୍ରଭୃତି ଯାହା ଥିଲା ବଡ଼ଭାଉଜ ସବୁ ଗବେଷଣାକୁ ଦାନ କରିଦେଲେ । ଏହାଛଡ଼ା ଭାଇନା ଯେତେ ଗୁଡିଏ ବହି ପ୍ରକାଶନ ସଂସ୍ଥା ଦ୍ୱାରା ଛପାଇଥିଲେ ତାର ଆୟ ଗବେଷଣାକୁ ପାଇବା ପାଇଁ ଲେଖିଦେଲେ ।

ପ୍ରଥମ ମହଲା ପାଇଁ ଭାରତ ସରକାରଙ୍କ ଅନୁଦାନ ଯଥେଷ୍ଟ ହେଲା ନାହିଁ । ଏଥିପାଇଁ ମୁଁ, ଭାଇନାଙ୍କର ପିଲାମାନେ-ପ୍ରସନ୍ନ, ଦିଲ୍ଲୀପ, ପ୍ରତାପ, ବିମଳ ସାହାଯ୍ୟ କଲୁ । ଇଲେକ୍ଟ୍ରିକ୍ ଲାଇନ୍, ପାଣି ଲାଇନ୍, ପ୍ରଭୃତି

ହୋଇଗଲା । ୩୦ଟା କାଠ ଚେୟାର, ପଢ଼ିବା ପାଇଁ ଦୁଇଟା ବଡ଼ ଟେବୁଲ୍, ମହାରଣା ଲଗାଇ ତିଆରି କରାଇ ଦେଲି ।

'ଖୁଣ୍ଟ ଗୁଣେ ଘୋଡ଼ା ଡିଏଁ' ଗବେଷଣା ପ୍ରତିଷ୍ଠାନର ପରିକଳ୍ପନା ଓ ସମୃଦ୍ଧି ପଣ୍ଡିତ ନୀଳମଣି ମିଶ୍ରଙ୍କ ଯୋଗୁଁ ସମ୍ଭବ ହୋଇପାରିଲା । ମୁଁ ଅନୁଷ୍ଠାନ ପାଇଁ ଯାହା କରିଛି ଏବଂ ଅନ୍ୟମାନେ ଯାହା ସାହାଯ୍ୟ କରିଛନ୍ତି କେବଳ ନୀଳମଣି ମିଶ୍ରଙ୍କ ଯୋଗୁଁ ସମ୍ଭବ ହୋଇପାରିଛି । ତାଙ୍କର ଧୈର୍ଯ୍ୟ, ସହିଷ୍ଣୁତା ଯୋଗୁଁ ଗବେଷଣା ପ୍ରତିଷ୍ଠାନ ହୋଇପାରିଛି । ପ୍ରଥମ ଅବସ୍ଥାରେ ପଣ୍ଡିତଙ୍କ ପାଖରେ ଯାହା ବହି, ପତ୍ରିକା ରଖିଥିଲେ ସବୁ ଗବେଷଣାକୁ ଦେଲେ । ବହୁ ବଦାନ୍ୟ ବ୍ୟକ୍ତି ବହୁ ମୂଲ୍ୟବାନ ବହି ଗବେଷଣାକୁ ଦେଲେ । ରାଜା ରାମମୋହନ ସଂସ୍ଥା ପକ୍ଷରୁ ପ୍ରତିବର୍ଷ କିଛି ବହି ମିଳୁଛି । ଏହିପରି ଭାବରେ ବର୍ତ୍ତମାନ ବହୁ ସଂଖ୍ୟକ ପ୍ରାୟ ଓଡ଼ିଆ, ଇଂରାଜୀ, ହିନ୍ଦୀର ଭିନ୍ନ ଭିନ୍ନ ବିଷୟରେ ମୂଲ୍ୟବାନ ବହି, ପୁରାଣ ପତ୍ରିକା, ପାଞ୍ଜି ମିଶି ୨୦ ହଜାର ରୁ ଊର୍ଦ୍ଧ୍ୱ ଏବଂ ୩୦୦ ରୁ ଊର୍ଦ୍ଧ୍ୱ ପୋଥି ରହିଛି ।

ପଣ୍ଡିତ ମହାଶୟ ତ ହଠାତ୍ ତା ୩।୧୦।୧୯୯୭ ରେ ଚାଲିଗଲେ । ତାଙ୍କ ପରେ ପରେ ୰ ମୁକୁନ୍ଦ କିଶୋର ସାହୁ ଗ୍ରନ୍ଥାଗାରିକ, ଯେ କି ଅନୁଷ୍ଠାନର ସମସ୍ତ ଦାୟିତ୍ୱ ତୁଲାଉଥିଲେ ତାଙ୍କର ମଧ ତା ୧୮।୪।୨୦୦୪ ରେ ହଠାତ୍ ଦେହାନ୍ତ ହୋଇଗଲା । ବର୍ତ୍ତମାନ ତାଙ୍କ ସ୍ତ୍ରୀ ବିନୋଦିନୀ ସାହୁ ଗ୍ରନ୍ଥାଗାରିକା ଭାବିରେ କାର୍ଯ୍ୟ କରୁଛି । ଡକ୍ଟର ଭଗବାନ ପଣ୍ଡା ଯେକି ଏହି ଅନୁଷ୍ଠାର ପ୍ରତିଷ୍ଠାତା ସଦସ୍ୟ ସେ ମହାଶୟ ପଣ୍ଡିତଙ୍କ ପରେ ଅନୁଷ୍ଠାନର ସମ୍ପାଦକ ଭାବରେ କାର୍ଯ୍ୟ ଚଳାଉଥିଲେ । ହଠାତ୍ ସେ ବେମାର ପଡିଗଲେ । ଯଦିଓ ସେ ଅନୁଷ୍ଠାନର ସମ୍ପାଦକ ଅଛନ୍ତି, ତଥାପି ଅସୁସ୍ଥତା ହେତୁ କିଛି କରିପାରୁନାହାଁନ୍ତି । ସହ ସମ୍ପାଦକ ଭାବରେ ଡକ୍ଟର ହରେକୃଷ୍ଣ ପାତ୍ର ସମସ୍ତ ଦାୟିତ୍ୱ ନେଇ ଅନୁଷ୍ଠାନକୁ ଚଳାଉଛନ୍ତି । ଡକ୍ଟର ଗୋପବନ୍ଧୁ ମହାନ୍ତି, ଡକ୍ଟର ଦେବାଶିଷ ମହାପାତ୍ର, ଦୁର୍ଗାଚରଣ ପଣ୍ଡା, ପ୍ରତିଷ୍ଠାତା ସଭ୍ୟ ଡକ୍ଟର ଦିନନାଥ ପାଠୀ, ଡଃ ରବିନାରାୟଣ ଦାଶ, ଡଃ ଲକ୍ଷ୍ମଣ ପଣ୍ଡା ପ୍ରଭୃତି ଏବଂ ଆଜୀବନ

ସଭ୍ୟମାନେ ଏହି ଅନୁଷ୍ଠାନ ଚଳାଇବାରେ ବିଶେଷ ସାହାଯ୍ୟ କରୁଛନ୍ତି । ମୋର କାମ ହେଲା ମୁଁ ପ୍ରତିଦିନ ପ୍ରତିଷ୍ଠାନକୁ ଯିବି ଏବଂ କ'ଣ କ'ଣ କରିବାକୁ ହେବ ଏମିତି କାହା ଦ୍ୱାରା ସେ କାମ ହୋଇପାରିବ ସେ ବିଷୟରେ ବୁଝି ଆସିବ । ତାଙ୍କ ନିକଟକୁ ଯିବା । ବର୍ତ୍ତମାନ ସମସ୍ତଙ୍କ ସହଯୋଗରେ ଅନୁଷ୍ଠାନଟି ଭଲ ଭାବରେ ଚାଲିଛି ।

## କୃଷ୍ଣଚନ୍ଦ୍ର ଗୁରୁକୁଳ ସଂସ୍କୃତ ମହାବିଦ୍ୟାଳୟ :-

ଏହି ଅନୁଷ୍ଠାନଟି ବହୁ ପୁରାତନ ଅନୁଷ୍ଠାନ । ଆଗେ ଏହି ଅନୁଷ୍ଠାନ ସୁଭଦ୍ରା ମହତାବ ଉଚ୍ଚ ଇଂରାଜୀ ବିଦ୍ୟାଳୟର ଦକ୍ଷିଣ ପଟେ ଗୋଟିଏ ସଂସ୍କୃତ ଟୋଲ ଥିଲା । ଏହି ଟୋଲ୍ ଗୋଟିଏ ବଡ଼ ଚାଳଘରେ ହେଉଥିଲା । ମୋ ପିଲାଦିନେ ପଣ୍ଡିତ ୰ ବନମାଳୀ ମିଶ୍ର ଏଠାରେ ପଣ୍ଡିତ ଥିଲେ । ଭୁବନେଶ୍ୱରର ଲିଙ୍ଗରାଜଙ୍କ ବହୁ ସେବକଙ୍କ ପିଲାମାନେ ଏହି ଟୋଲ୍‌ରେ ସଂସ୍କୃତ ଶିକ୍ଷା କରୁଥିଲେ । କୌଣସି କାରଣରୁ ପଣ୍ଡିତଙ୍କ ଦେହାନ୍ତ ପରେ ଏହି ଚାଳଘର ଭାଙ୍ଗିଗଲା ।

ଶଙ୍କରାନନ୍ଦ ମଠର ସ୍ୱାମୀ ସଚ୍ଚିଦାନନ୍ଦ ସରସ୍ୱତୀ ଜଣେ ବଡ ପଣ୍ଡିତ ଏବଂ ସଂସ୍କୃତ ପ୍ରେମୀ ଥିଲେ । ସ୍ଥାନୀୟ ଭଦ୍ରବ୍ୟକ୍ତିଙ୍କ ଅନୁରୋଧରେ ତାଙ୍କ ମଠ ମଧ୍ୟରେ ସଂସ୍କୃତ ଟୋଲ୍ ଚଳାଇଲେ । ପରେ ତା ୨.୭.୧୯୫୫ ମସିହାରେ ମଠ ସାମ୍ନାରେ ଥିବା ଏ କ .୩୧୫ ଡିସିମିଲ ଜମି ଟୋଲକୁ ରେଜିଷ୍ଟ୍ରେସନ୍ କରିଦେଲେ । ଏହି ସଂସ୍କୃତ ଟୋଲ୍‌ରେ ପ୍ରଥମରୁ ଆଚାର୍ଯ୍ୟ ପର୍ଯ୍ୟନ୍ତ ପଢ଼ା ହେଲା । ପୂର୍ବତନ ଓଡ଼ିଶାର ମନ୍ତ୍ରୀ 'ସମାଜ'ର ସମ୍ପାଦକ ଡଃ ୰ ରାଧାନାଥ ରଥ ଏହି ସଂସ୍କୃତ ବିଦ୍ୟାପୀଠର ସଭାପତି ରହିଲେ । ସ୍ୱାମୀଜୀ ଏବଂ ରାଧାନାଥ ବାବୁଙ୍କ ଚେଷ୍ଟାରେ ନୟାଗଡ଼ର ରାଜା କୃଷ୍ଣଚନ୍ଦ୍ର ଦେବଙ୍କ ଦାନରେ ବଡ଼ ବଡ଼ ଶ୍ରେଣୀ ଗୃହ, ଅଫିସ୍, ଲାଇବ୍ରେରୀ, ଛାତ୍ରାବାସ ତିଆରି କରାଗଲା । ଭୁବନେଶ୍ୱର ବାହାରୁ ବହୁ ଛାତ୍ର ଏହି ସଂସ୍କୃତ ବିଦ୍ୟାପୀଠରେ ଆସି ପଢ଼ିଲେ । ଛାତ୍ରାବାସରେ ପ୍ରାୟ ତିରିଶ ଜଣ ଛାତ୍ର ରହୁଥିଲେ । ଏହି ଛାତ୍ରମାନଙ୍କର ସମସ୍ତ ମେସ୍ ଖର୍ଚ୍ଚ ନୟାଗଡ଼ର ଗୋଟିଏ ମଠରୁ ଆସୁଥିଲା । ନୟାଗଡ଼ ରାଜା ପିଲାମାନଙ୍କର ଏହି ଖର୍ଚ୍ଚ ବ୍ୟବସ୍ଥା କରିଥିଲେ । କିନ୍ତୁ

ଏଣ୍ଡାମେଣ୍ଟ ଅଧୀନକୁ ମଠ ସବୁ ଚାଲିଯିବା ପରେ ଆଉ ସେ ମଠରୁ କିଛି ସାହାଯ୍ୟ ଆସିଲା ନାହିଁ । ଓଡ଼ିଶାର ବହୁ ବିଶିଷ୍ଟ ପଣ୍ଡିତ ଏହି ସଂସ୍କୃତ ଶିକ୍ଷାନୁଷ୍ଠାନରେ ଶିକ୍ଷାଦାନ କରୁଥିଲେ ।

ସ୍ୱାମିଜୀଙ୍କର ଦେହାନ୍ତ ପରେ ରାଧାନାଥବାବୁ ଏହି ଶିକ୍ଷା ଅନୁଷ୍ଠାନକୁ ନଜର ଦେଲେ ନାହିଁ । ପରିଚାଳନା କମିଟି ମିଟିଙ୍ଗକୁ ଆସିଲେ ନାହିଁ । ଏହି କମିଟିରେ ୰କେଦାରନାଥ ମହାପାତ୍ର, ଗୌରୀ କୁମାର ବ୍ରହ୍ମା, ଲକ୍ଷ୍ମୀଧର ଗରାବଡୁ ପ୍ରଭୃତି ସଭ୍ୟ ଏବଂ କବିରାଜ ୰ ଅନନ୍ତ ତ୍ରିପାଠୀ ସମ୍ପାଦକ ଥିଲେ ।

ପରେ ପରେ ଭାଇନା (କେଦାରନାଥ ମହାପାତ୍ର) ଲକ୍ଷ୍ମୀଧର ଗରାବଡୁଙ୍କ ଦେହାନ୍ତ ପରେ ନୂଆ ପରିଚାଳନା କମିଟି ଗଢ଼ା ଗଲା । କବିରାଜ ଅନନ୍ତ ତ୍ରିପାଠୀ ସଭାପତି ହେଲେ, ମୁଁ ହେଲି ସମ୍ପାଦକ । ପଣ୍ଡିତ ସୁରେଶ କୁମାର ନନ୍ଦ ପ୍ରଧାନ ଅଧ୍ୟକ୍ଷ, କମଳାକାନ୍ତ ହୋତା ପ୍ରଭୃତି ପଣ୍ଡିତମାନେ ଏହାର ଅଧ୍ୟକ୍ଷ ଥିଲେ । କିଛିଦିନ ପରେ କବିରାଜ ଅନନ୍ତ ତ୍ରିପାଠୀଙ୍କର ମଧ୍ୟ ଦେହାନ୍ତ ହୋଇଗଲା । ପ୍ରଫେସର ଡଃ ୰ ନଟବର ସାମନ୍ତରାୟ ସଭାପତି ରହିଲେ । ଏହି କୃଷ୍ଣଚନ୍ଦ୍ର ଗୁରୁକୁଳ ସଂସ୍କୃତ ମହାବିଦ୍ୟାଳୟର କୋଠଘର ବହୁଦିନ ଧରି ମରାମତି ନହେବାରୁ ସବୁ ଘରେ ବର୍ଷା ହେଲେ ପାଣି ଗଳୁଥିଲା । ପିଲାମାନେ ବସିବା ପାଇଁ ଓ ପଢ଼ିବାପାଇଁ ବେଞ୍ଚ, ଟେବୁଲ୍ କିଛି ନଥିଲା । ଘର ଓ ଛାତ ମରାମତି କରି ରଙ୍ଗ କରାଗଲା । ପିଲାଙ୍କ ପାଇଁ ବେଞ୍ଚ, ଟେବୁଲ୍ ତିଆରି କରାଗଲା । କିଛି ଅର୍ଥ ସଂଗ୍ରହ କରାଯାଇ ପ୍ରଥମ ମହଲାରେ ଦୁଇଟି ବଡ଼ ହଲ୍ କରାଗଲା । ଏହି ସବୁକାମରେ ଅଧ୍ୟକ୍ଷ ସୁରେଶ କୁମାର ନନ୍ଦ, ପଣ୍ଡିତ କମଳାକାନ୍ତ ହୋତା ଏବଂ ଅନ୍ୟ ଅଧ୍ୟକ୍ଷମାନେ ପୂର୍ଣ୍ଣ ସହଯୋଗ କଲେ ।

ଶିକ୍ଷାବିଭାଗର ନୂଆ ନିୟମ ଅନୁସାରେ ଏବେ ଭୁବନେଶ୍ୱର ସବ୍ କଲେକ୍ଟର ସଭାପତି ଏବଂ ପ୍ରଧାନ ଅଧ୍ୟକ୍ଷ ସମ୍ପାଦକ ଅଛନ୍ତି । ବର୍ତ୍ତମାନ ଏହି ସଂସ୍କୃତ କଲେଜର ଅବସ୍ଥା ଶୋଚନୀୟ ହୋଇପଡ଼ିଛି । ସରକାରଙ୍କ ଶିକ୍ଷା ବିଭାଗର ଆଦେଶ ମତେ ଯେଉଁ ଠାରେ 'ଶାସ୍ତ୍ରୀ' ପଢ଼ାଯାଉଥିଲା ତାକୁ କଲେଜ ମାନ୍ୟତା ଦିଆଗଲା । ସେହି ଅନୁସାରେ ଇଂରାଜୀ, ଇତିହାସ ଓ ବ୍ୟାକରଣ ପଢ଼ାଇବାପାଇଁ ଜଣେ ନୂଆ ଅଧ୍ୟକ୍ଷ ନିଯୁକ୍ତି କରାଗଲା । ପଣ୍ଡିତ

ସୁରେଶ କୁମାର ନନ୍ଦଙ୍କର ଶିକ୍ଷାଗତ ଯୋଗ୍ୟତା ଥିବାରୁ ପରିଚାଳନା କମିଟି ଅସ୍ଥାୟୀ ଭାବରେ ତାଙ୍କୁ ମୁଖ୍ୟ ଅଧ୍ୟକ୍ଷ ଭାବରେ ରଖିଲେ । ମୋର ବାଲ୍ୟବନ୍ଧୁ ଂ ଘନଶ୍ୟାମ ପଣ୍ଡା ଚାକିରିରୁ ଅବସର ନେବାପରେ ତାଙ୍କୁ ମୁଁ ଏହି ଅନୁଷ୍ଠାନର ପରିଚାଳନା କମିଟିର ସଭ୍ୟ ଭାବରେ ନେଇଗଲି । ସେ ମହାଶୟ କଲେଜକୁ କାଳ ହେଲେ । ଯେଉଁ ନୂଆ ଅଧ୍ୟକ୍ଷ ମାନେ କଲେଜରେ ଯୋଗ ଦେଇଥିଲେ ତାଙ୍କ ମଧ୍ୟରୁ ଯିଏ ପ୍ରଥମେ ଯୋଗ ଦେଇଥିଲେ ତାଙ୍କୁ ପ୍ରଧାନ ଅଧ୍ୟକ୍ଷ କରିବାପାଇଁ ଂ ଘନଶ୍ୟାମ ପଣ୍ଡା, ଓକିଲ ଦୁର୍ଗାଚରଣ ମହାପାତ୍ର କଲେଜରେ ନାନା ପ୍ରକାର ବିଭ୍ରାଟ ସୃଷ୍ଟିକଲେ । କଲେଜର ପାଠ ପଢ଼ାରେ ବହୁ ବାଧା ସୃଷ୍ଟି ହେଲା । ବେଶି ପିଲା କଲେଜରେ ପଢ଼ିବାକୁ ଆସିଲେ ନାହିଁ । ବର୍ତ୍ତମାନ ଆଉ ପ୍ରଥମାରେ ପିଲା ପଢ଼ିବାକୁ ଆସୁନାହାନ୍ତି । ଯେଉଁ ଶିକ୍ଷକ ମାନେ ପ୍ରଥମାରେ ପଢ଼ାଉଥିଲେ ଶିକ୍ଷାବିଭାଗ ସେମାନଙ୍କୁ ହାଇସ୍କୁଲ୍‌ମାନଙ୍କୁ ପଠାଇଦେଲା । ବହୁ ପୁରାତନ ଅନୁଷ୍ଠାନ କୃଷ୍ଣଚନ୍ଦ୍ର ଗୁରୁକୁଳ ମହାବିଦ୍ୟାଳୟର ପୂର୍ବରୁ ଯେଉଁ ଖ୍ୟାତି ଥିଲା ତାହା ନଷ୍ଟ ହୋଇଗଲା । ମୁଁ ବହୁବର୍ଷ ଧରି ଏହି ଅନୁଷ୍ଠାନକୁ ଅକ୍ଳାନ୍ତ ପରିଶ୍ରମ କରି ଗଢ଼ି ଚାଲିଥିଲି, ତାହା ଧୂଳିସାତ ହୋଇଗଲା । ବର୍ତ୍ତମାନ କମଳା ନେହେରୁ ମହିଳା ମହାବିଦ୍ୟାଳୟର ପ୍ରଧାନ ଅଧ୍ୟକ୍ଷା ଏହି ସଂସ୍କୃତ ମହାବିଦ୍ୟାଳୟର ଅଧ୍ୟକ୍ଷା ଦାୟିତ୍ୱରେ ଅଛନ୍ତି ।

## ଅଲାବୁକେଶ୍ୱର/ ଲବକେଶ୍ୱର ମନ୍ଦିର :-

ଏହି ମନ୍ଦିରଟି ଲିଙ୍ଗରାଜ ମନ୍ଦିରର ସମସାମୟିକ । ମନ୍ଦିର ସମ୍ମୁଖରେ ଥିବା ପୁଷ୍କରିଣୀଟି ଭୁବନେଶ୍ୱରର ଅଷ୍ଟତୀର୍ଥ ମଧ୍ୟରୁ ଗୋଟିଏ । ଅଲାବୁକେଶ୍ୱର ମହାଦେବ ବହୁବର୍ଷ ଧରି ଅପୂଜା ଥିଲେ । ମୋର ସାନବାପା କବିରାଜ ବାଞ୍ଛାନିଧି ମହାପାତ୍ର କବିରାଜ ଥିଲେ ଓ ଜଣେ ଭଲ ସଂସ୍କୃତ ପଣ୍ଡିତ ଥିଲେ । ସେ ନିରାମିଷାଶୀ ଥିଲେ । ଏପରିକି ପିଆଜ ରସୁଣ ଖାଆନ୍ତି ନାହିଁ । ଅଳ୍ପ ବୟସରେ ସ୍ତ୍ରୀ ମରିଗଲେ । ସେ ଆଉ ବିବାହ କରିନଥିଲେ । ୧୯୧୦ ମସିହା ବେଳକୁ ତାଙ୍କୁ ସ୍ୱପ୍ନାଦେଶ ହେଲା ତୁ ଅଲାବୁକେଶ୍ୱରଙ୍କର ପୂଜା କଲେ ତୋ ବଂଶର ମଙ୍ଗଳ ହେବ । ସେହି ସମୟକୁ ସାନବାପା ଅଲାବୁକେଶ୍ୱରଙ୍କର ଶେଷ ଜୀବନ ପର୍ଯ୍ୟନ୍ତ (୧୯୫୩) ପୂଜା କଲେ । ସେତେବେଳେ ଏହି ଲବକେଶ୍ୱର

ଏରିଆ କୋଚିଲା ଜଙ୍ଗଲ ଥିଲା । ଆଖପାଖରେ କୌଣସି ଘରଦ୍ୱାର ନଥିଲା । ସାନବାପା କହନ୍ତି ସେହି ଲବକେଶ୍ୱର କୁଣ୍ଡରେ ବହୁତ ନାଗସାପ ଥିଲେ । ଶୀତ ଦିନେ ଠାକୁରଙ୍କୁ ପାଣିଦେବା ପାଇଁ ସେ କୁଣ୍ଡ ଭିତରକୁ ଗଲାବେଳେ ରାସ୍ତାରେ ଶୋଇଥାନ୍ତି । କିନ୍ତୁ ସାନବାପା 'ଓଁ ନମଃ ଶିବାୟ' ଡାକି ଡାକି ଗଲାବେଳେ ସେମାନେ ରାସ୍ତାରୁ ଆଡ଼େଇ ଯାନ୍ତି ।

ସାନବାପାଙ୍କ ଦେହାନ୍ତ ପରେ ମୋର ବଡ଼ ମଝିଆ ଭାଇ କବିରାଜ ବାସୁଦେବ ମହାପାତ୍ର ବହୁଦିନ ପୂଜା କଲେ । ସେ ରୋଗୀ ଚିକିତ୍ସା ଏବଂ ଔଷଧ ତିଆରି କରିବାରେ ଘରେ ଆମର ଇଷ୍ଟଦେବୀ ମା ଦୁର୍ଗାଙ୍କର ଏବଂ ଲବକେଶ୍ୱରଙ୍କ ପୂଜାରେ ଅସୁବିଧା ହେଲା । ୧୯୫୫ ବେଳକୁ ନକୁଳ ଚରଣ ପାଢ଼ୀ ଘରେ ଦୁର୍ଗାଦେବୀଙ୍କ ପୂଜା, ଲବକେଶ୍ୱରଙ୍କ ପୂଜା କରିବା ପରେ ଔଷଧ ତିଆରି କରିବା ପାଇଁ ରହିଲେ । ତାଙ୍କ ଦେହାନ୍ତ ପରେ ଏବେ ତାଙ୍କ ବଡ଼ପୁଅ ଜୀବନ ପାଢ଼ୀ ପୂଜା କରୁଛନ୍ତି । ବର୍ତ୍ତମାନ ରବିଟକିଜ ଏବଂ ଲବକେଶ୍ୱର ଏରିଆରେ ବହୁତ ଲୋକ ବାସକରୁଛନ୍ତି । ଠାକୁରଙ୍କ ସେବାପୂଜା ଅନ୍ନଭୋଗ ଏବଂ ସନ୍ଧ୍ୟାରେ ବାଲ୍ୟଭୋଗ ପାଇଁ କେତେଜଣ ବିଶିଷ୍ଟ ଲୋକ ରାଜୁ ସାହୁ, ୰ ତ୍ରୈଲୋକ୍ୟନାଥ ରାଉତ, ଓକିଲ ସୁବାସ ବାବୁ, ଡାଃ ୰ ଗଦାଧର ମହାପାତ୍ର ପ୍ରଭୃତି ଗୋଟେ କମିଟି କଲେ । ମୁଁ ମଧ୍ୟ ଏହି କମିଟିରେ ରହିଲି । ସମସ୍ତେ କିଛି କିଛି ଚାନ୍ଦା ଦେଲେ । ଏମାନଙ୍କ ଅନ୍ତେ ଲବକେଶ୍ୱର ମନ୍ଦିର ଉନ୍ନୟନ ସମିତି ଗଢ଼ାଗଲା । ମୁଁ ସଭାପତି, ଡଃ ନିତ୍ୟାନନ୍ଦ ନାୟକ ଉପ ସଭାପତି, ସୁବାସ ଚନ୍ଦ୍ର ପଟ୍ଟନାୟକ ସମ୍ପାଦକ, ଶ୍ରୀ ନଟବର ରାଉତ ସହ ସମ୍ପାଦକ, କୋଷାଧ୍ୟକ୍ଷ ଗୋବିନ୍ଦ ଚନ୍ଦ୍ର ନାୟକ, ଶ୍ରୀ ଭ୍ରମରବର ସ୍ୱାଇଁ, ଶ୍ରୀ ଶରତ ଚନ୍ଦ୍ର ପ୍ରଧାନ, ଶ୍ରୀ ଶ୍ରୀନିବାସ ପାଲଟାସିଂହ, ଶ୍ରୀ ବିଶ୍ୱନାଥ ଦାଶ, ଶ୍ରୀ ଦୀପକ କୁମାର ସିଂହ, ଶ୍ରୀ ରାଧାଚରଣ ଦାସ, ଡଃ ବି.ଏନ୍. ମହାନ୍ତି ପ୍ରଭୃତିଙ୍କୁ ନେଇ ତା ୨୯.୪.୧୯୯୨ ରେ ସୋସାଇଟି ଆକ୍ଟ ଅନୁସାରେ ରେଜିଷ୍ଟ୍ରେସନ୍ କରାଗଲା । ବର୍ତ୍ତମାନ ଏହି କମିଟି ଶ୍ରୀଜୀଉଙ୍କର ସେବାପୂଜା ଏବଂ ବିଜେସ୍ଥଳୀର ସର୍ବାଙ୍ଗୀନ ଉନ୍ନତି କାର୍ଯ୍ୟ କରାଉଅଛି । ପ୍ରତ୍ୟେକ ସଭ୍ୟ ମାସକୁ ଦଶଟଙ୍କା ଦେଉଛନ୍ତି । ବାହାରୁ ମଧ୍ୟ ସଭ୍ୟ ସଂଗ୍ରହ କରାଯାଇ ମାସକୁ

ଟ. ୧୦/- ଆଦାୟ କରାଯାଉଅଛି । ଏହି ଟଙ୍କାରେ ପ୍ରତିଦିନ ଦିନବେଳା ଅନ୍ନଭୋଗ, ସନ୍ଧ୍ୟାରେ ଆଳତି, ବାଲ୍ୟଭୋଗ ହେଉଛି । ପୂର୍ବରୁ ଲବକେଶ୍ୱରଙ୍କର ଜମିବାଡି ଖଞ୍ଜା ନାହିଁ । ଶିବରାତ୍ରିକୁ ଆମେ ମେମ୍ବରମାନେ ଚାନ୍ଦା ଦେଉଛୁ ଏବଂ ବାହାରୁ ଚାନ୍ଦା ଆଦାୟ କରାଯାଇ ପ୍ରାୟ ପଚାଶ ହଜାର ଟଙ୍କା ଖର୍ଚ୍ଚରେ ଶ୍ରୀ ଜୀଉଙ୍କର ଭୁବନେଶ୍ୱରର ବିଶିଷ୍ଟ ପଣ୍ଡିତ କମଳାକାନ୍ତ ହୋତାଙ୍କ ଦ୍ୱାରା ରାତିରେ ଚାରି ପ୍ରହର ପୂଜା ହେଉଛି । ସନ୍ଧ୍ୟା ୭ଟା ରୁ ରାତି ୧୨ଟା ପର୍ଯ୍ୟନ୍ତ ଭଜନ ସମାରୋହ ହେଉଛି । ଶିବରାତ୍ରି ଭୋରରୁ ଦୁଧ, ଦହି, ମହୁ, ଗୁଆଘିଅ, ନବାତ ମାଜଣା କରାଯାଇ ସକାଳୁ ଦର୍ଶନକୁ ଆସୁଥିବା ଭକ୍ତମାନଙ୍କୁ ବଣ୍ଟାଯାଉଛି । ମାଜଣା ପରେ ଚୂଡାଘସା, ଖଜା ବୁନ୍ଦିଆ ପ୍ରଭୃତି ପ୍ରାୟ ୨୦/୩୦ କିଲୋ ଭୋଗ କରାଯାଇ ଭକ୍ତମାନଙ୍କୁ ବଣ୍ଟାଯାଉଛି । ଦିନ ୧୨ଟାରେ ୫୦୦ ଲୋକଙ୍କ ପାଇଁ ଅନ୍ନ ଭୋଗ କରାଯାଇ ଦରିଦ୍ର ନାରାୟଣ ସେବା କରାଯାଉଅଛି ।

ମୁଁ, ସୁବାଷବାବୁ, ନିତ୍ୟାନନ୍ଦ ବାବୁ ମଝିରେ ମଝିରେ ଭାରତ ସରକାରଙ୍କର ପ୍ରତ୍ନତତ୍ତ୍ୱ ବିଭାଗର ସୁପରିଣ୍ଟେଣ୍ଡେଣ୍ଟଙ୍କୁ ଦେଖାକରି ଏବଂ ତାଙ୍କୁ ମନ୍ଦିରକୁ ଡାକି ମନ୍ଦିର ମରାମତି, ବିଜେସଳୀ ଚାରିପଟେ ପାଚେରି, ଲାବକେଶ୍ୱର ପୁଷ୍କରିଣୀର ପଙ୍କୋଦ୍ଧାର, ପୋଖରୀ ଭିତରକୁ ପାହାଚ, ମନ୍ଦିର ଚାରିପଟେ ବଗିଚା କରାଇଛୁ ।

## ଶ୍ରୀ ଶ୍ରୀ ଲିଙ୍ଗରାଜ ମହାପ୍ରଭୁଙ୍କର ବିବାହ ଓ ଶୀତଳଷଷ୍ଠୀ :-

ଓଡ଼ିଶାର ଶୈବ ପୀଠମାନଙ୍କରେ ଦିଅଁ ବିଭା, ଶୀତଳଷଷ୍ଠୀ ପାଳନ କରାଯାଏ । ଏବେ ସମ୍ବଲପୁରରେ ଏହା ବହୁ ଆଡମ୍ବରରେ ପାଳନ କରାଯାଉଛି । ଆମ ପିଲାଦିନେ ଦିଅଁ ବିଭା ଶୀତଳ ଷଷ୍ଠୀର ଦୁଇ ମାସ ଆଗରୁ ମିଶ୍ରସାହି, ଦାଶ ସାହି, ରଥ ସାହି ମାନଙ୍କରେ ବାଣ ତିଆରି କରାଯାଉଥିଲା । ଗାଁ ମାନଙ୍କରୁ ଯେଉଁ ବାଉଁଶ ଉପଯୁକ୍ତ ବଛାଯାଇ ଅଣାଯାଏ । ଗୋଟେ ଗୋଟେ ହାବେଳି ବାଣ, ଚକ୍ରବାଣରେ ବାରୁଦ ଭରତି କରାଯାଇ ୧୦ ହଜାର ପର୍ଯ୍ୟନ୍ତ ମାଡ଼ କରାଯାଏ । ଏହି ମାଡ଼ ଗଣତି ଏହି ପ୍ରକାର ହୁଏ (ତୁ ଏକ, ମୁଁ ଏକ, ଯେଉଁ ଏକ କୁ, ସେଇ ଏକ) ପାଞ୍ଚଥର ମାଡ଼ ହେଲା ।

ବିଭାଘର ଦିନ ରାତିରେ ଲିଙ୍ଗରାଜ ମନ୍ଦିରରେ ଭୋଜି ହୁଏ । ସବୁ ସେବାକାରୀ, ବାଜାବାଲା ଏବଂ ସ୍ଥାନୀୟ ଭଦ୍ରବ୍ୟକ୍ତିମାନଙ୍କୁ ଡକାଯାଏ । ରାତି ୧୨ଟା ବେଳକୁ ପ୍ରଭୁ ଲିଙ୍ଗରାଜ, ମା ପାର୍ବତୀ, ବାସୁଦେବ, କପିଳନାଥ, ବିଜେ ପ୍ରତିମା କେଦାରଗୌରୀ ମନ୍ଦିରକୁ ଯାନ୍ତି । ଆମ ମାନଙ୍କ ବିଭାଘର ପରି କ୍ଷେତ୍ରବାସୀ ବ୍ରାହ୍ମଣମାନେ ପ୍ରଭୁ ଲିଙ୍ଗରାଜ ଓ ମା ପାର୍ବତୀଙ୍କର କେଦାରଗୌରୀଙ୍କ ମନ୍ଦିର ବେଢ଼ାରେ ଥିବା ବିବାହ ମଣ୍ଡପରେ ବିଭାଘର କରନ୍ତି । ପ୍ରଭୁ ବାସୁଦେବ, ପ୍ରଭୁ କପିଳନାଥ ବରଯାତ୍ରୀ ହୋଇ ଯାଇଥାନ୍ତି ।

ଶୀତଳ ଷଷ୍ଠୀ ଦିନ ଠାକୁରମାନେ କେଦାରଗୌରୀ ବାହାରି ବିନ୍ଦୁସାଗର ଉତ୍ତର ପଶ୍ଚିମ କୋଣରେ ଗହୀର ବିଲ ଦେଇ ଗୋସାଗରେଶ୍ୱର ମନ୍ଦିର ନିକଟରେ ରଥଦାଣ୍ଡକୁ ଆସନ୍ତି । ଏହି ଗହୀର ମଧ୍ୟରେ ରଥସାହି, ମିଶ୍ରସାହି, ରଥ ସାହିରେ କରାଯାଇଥିବା ବଡ଼ ବଡ଼ ହାବିଲି ବାଣ ମାରନ୍ତି । ରଥଦାଣ୍ଡରେ ଚକ୍ରବାଣ ମରାଯାଏ । ଏହି ବିରାଟ ବିରାଟ ହାବେଲି ମରାଯିବା ପାଇଁ ଠାକୁରମାନେ ଗହିର ଭିତର ଦେଇ ଆସିବା ପ୍ରଥା ଥିଲା । କାଳକ୍ରମେ ଏହା ବନ୍ଦ ହୋଇଗଲା । ଗୋଡିପୋଖରୀ ସାହିର ବାସୁ ମହାପାତ୍ର କିଛି ବାଣ କରି ଶୀତଳ ଷଷ୍ଠୀ ଦିନ ଏବଂ ଠାକୁରଙ୍କ ବିଭାଘରର ଚତୁର୍ଥୀ ଦିନ ଆଜିକାଲି କରୁଥିବା ହାବେଲି, ବାଣ ପ୍ରଭୃତି ମାରନ୍ତି । ଏବେ ତାଙ୍କ ପୁଅ (ଟିକମ) ଶୀତଳଷଷ୍ଠୀ ପାଇଁ ବାଣ ତିଆରି କରୁଅଛି ।

ଦଶ, ପନ୍ଦର ବର୍ଷତଳେ ସୁରେଶ କୁମାର ରାଉତରାୟ ଜଟଣୀର ପୂର୍ବତନ ବିଧାୟକ ଏବଂ ମନ୍ତ୍ରୀଙ୍କ ନେତୃତ୍ୱରେ ଗୋଟେ ଲିଙ୍ଗରାଜଙ୍କ ଶୀତଳଷଷ୍ଠୀ କମିଟି ଗଢ଼ାଗଲା । ଏହି କମିଟିରେ ମୁଁ ସଭାପତି, ଟାଉନ୍ କ୍ଲବ୍‌ର ସମ୍ପାଦକ ଜୟଦେବ ମହାପାତ୍ର ସମ୍ପାଦକ, ରବି ନାରାୟଣ ମହାପାତ୍ର କୋଷାଧ୍ୟକ୍ଷ, ଭାଗୀରଥି ମହାପାତ୍ର, ଭାଗୀରଥି ମହାସୁଆର, ରମେଶ ମହାପାତ୍ର, ବେଣୁଧର ପାତ୍ର, ଅଭିମନ୍ୟୁ ମହାପାତ୍ର , ରବିପାତ୍ର, ଆର୍ତ୍ତତ୍ରାଣ ମହାପାତ୍ର (ଚାଇଁଆ) ପ୍ରଭୃତିଙ୍କୁ ନେଇ ଗୋଟିଏ କମିଟି ଗଢ଼ାଗଲା । ଏହି କମିଟିକୁ ସୋସାଇଟି ଆକ୍ଟ ଅନୁସାରେ ରେଜିଷ୍ଟ୍ରେସନ୍ କରାଗଲା ।

ବର୍ତ୍ତମାନ ଲିଙ୍ଗରାଜଙ୍କ ବିବାହ ଏବଂ ଶୀତଳଷଷ୍ଠୀରେ ଲକ୍ଷାଧିକ ଟଙ୍କା ଖର୍ଚ୍ଚ ହେଉଛି । ସୁରେଶ କୁମାର ରାଉତରାୟ, ମୁଁ, ରବି ମହାପାତ୍ର, ରମେଶ

ମହାପାତ୍ର, ବେଣୁଧର ପାତ୍ର, ଅଭିମନ୍ୟୁ ମହାପାତ୍ର ପ୍ରଭୃତି ଶୀତଳ ଷଷ୍ଠୀର ୨୦ ଦିନ ପୂର୍ବରୁ ସକାଳୁ ସନ୍ଧ୍ୟା ପର୍ଯ୍ୟନ୍ତ କ୍ୟାପିଟାଲ୍, ବଡ଼ଗଡ଼, ଝାଡ଼ପଡ଼ା ପ୍ରଭୃତି ବୁଲି ବୁଲି କେତେଜଣ ବ୍ୟବସାୟୀ କଣ୍ଟ୍ରାକ୍ଟର ପ୍ରଭୃତିଙ୍କ ଠାରୁ ଚାନ୍ଦା ଆଦାୟ କରୁ। ଭୁବନେଶ୍ବର ମ୍ୟୁନିସିପାଲିଟି, ଲିଙ୍ଗରାଜ ଟ୍ରଷ୍ଟିବୋର୍ଡ କିଛି ଚାନ୍ଦା ଦିଅନ୍ତି । ଏବେ ଓଡ଼ିଶା ସରକାରଙ୍କ ଲ' ଡିପାର୍ଟମେଣ୍ଟ ଭୁବନେଶ୍ବର ମ୍ୟୁନିସ୍‌ପାଲଟି କିଛି ଆର୍ଥିକ ସାହାଯ୍ୟ କରୁଛନ୍ତି ।

ଦିଅଁ ବିଭାଦିନ ବିରାଟ ଶୋଭାଯାତ୍ରାରେ ଲିଙ୍ଗରାଜ ମହାପ୍ରଭୁ, ମା' ପାର୍ବତୀ, ବାସୁଦେବ, କପିଳନାଥଙ୍କର ବିଜେ ପ୍ରତିମା ବିମାନ ଓ ପାଲିଙ୍କିରେ ପଟୁଆରରେ ଲିଙ୍ଗରାଜ ମନ୍ଦିରରୁ କେଦାର ଗୌରୀ ମନ୍ଦିରକୁ ଯାଆନ୍ତି, ସେଠାରେ ଲିଙ୍ଗରାଜଙ୍କ ପାର୍ବତୀ ଓ ମା ଗୌରୀଙ୍କର ବିବାହ କାର୍ଯ୍ୟ ସମ୍ପନ୍ନ ହୁଏ । ପରଦିନ ଶୀତଳଷଷ୍ଠୀରେ ରାତି ୮/୯ ରେ କେଦାର ଗୌରୀରୁ ବାହାରି ପୂର୍ବପରି ବିନ୍ଦୁସାଗର ଉତ୍ତର ପଶ୍ଚିମକୋଣରେ ବାସୁଦେବ ମାର୍ଗ ଏବେ ଗହରି ମଧ୍ୟରେ ରାସ୍ତା ହୋଇଯାଇଛି ସେ ରାସ୍ତାର ନାମ ବାସୁଦେବ ମାର୍ଗ ଦିଆଯାଇଛି । ଗୋସାଗରେଶ୍ୱର ମନ୍ଦିର ନିକଟରେ ରଥଦାଣ୍ଡରେ ବାହାରୁଛନ୍ତି । ଗୋସାଗରେଶ୍ୱର ଠାରୁ ଲିଙ୍ଗରାଜ ମନ୍ଦିର ପ୍ରାୟ ଗୋଟେ କିଲୋମିଟର ହେବ । ରାସ୍ତା ପୂରା ଆଲୋକ ମାଳାରେ ସଜା ହେଉଛି । ଠାକୁରମାନଙ୍କର ବିମାନ ଦୁଇଟି ଓ ଗୋଟେ ପାଲେଙ୍କି ଫୁଲରେ ସଜାଯାଉଛି । ଗୋଟେ ବିମାନରେ ପ୍ରଭୁ ଲିଙ୍ଗରାଜ, ମା' ପାର୍ବତୀ, ଅନ୍ୟ ବିମାନରେ କପିଳନାଥ, ପାଲେଙ୍କିରେ ବାସୁଦେବ ବିଜେ କରିଥାନ୍ତି । ଗୋସାଗରେଶ୍ୱର ଠାରେ ବଡ଼ଦାଣ୍ଡରେ ଗୋଟେ ବିରାଟ ହାତୀ କାଠ, ବାଉଁଶ ତିଆରି ହୋଇ ନୂଆ ଧଳାକନା ଉପରେ ଘୋଡଣି ଦିଆଯାଇଥାଏ । ସୁନ୍ଦର ଭାବରେ ହାତୀମୁଣ୍ଡ, ଥୋଡ଼ପାହାଡ଼ ହାତୀ କାନ, ହାତୀଦାନ୍ତ ହାତୀରେ ଖଞ୍ଜା ଯାଇଥାଏ । ଠିକ୍ ବଡ଼ ଧଳା ହାତୀ ପରି ଦେଖାଯାଏ । ଜଣେ ପାଳିଆ ସେବକ ରାଜା ବେଶ ହୋଇ ଖଣ୍ଡା, ଥାଟ ଧରି ହାତୀ ଉପରେ ବସେ । ଠାକୁରଙ୍କ ବିମାନ ଆଗେ ଆଗେ ଲୋକମାନେ ଭିଡ଼ି ଭିଡ଼ି ନିଅନ୍ତି । ଏହି ହାତୀର ନାମ (ଇନ୍ଦ୍ରହାତୀ) ଏହି ପ୍ରଥା ବହୁ କାଳରୁ ଚାଲି ଆସିଛି । ଏହି ହାତୀ ତିଆର

କରିବା ପାଇଁ ଏବଂ ହାତୀରେ ବସିବାପାଇଁ ମନ୍ଦିର ସେବକ ମାନଙ୍କ କିଛି ଜାଗା ଜମି ଭୋଗ କରୁଛନ୍ତି ।

ଗୋସାଗରେଶ୍ୱର ଠାରୁ ପ୍ରୋସେସନ୍ ଆରମ୍ଭ ହୁଏ । ହଜାର ହଜାର ହାବିଳି, ଗଛବାଣ, ଗଡମ୍ବା, କୁମ୍ଭି, ଚକ୍ର ପ୍ରଭୃତି ବହୁ ପ୍ରକାରର ବାଣ ମରାଯାଏ । ଘଣ୍ଟୁଆ ଦଳ, ଚାରି ପାଞ୍ଚ ଦଳ ଭଲ ଭଲ ବ୍ୟାଣ୍ଡ ବାଜା ପାର୍ଟି, ଦୁଇ ତିନି ଦଳ ଭଲ ଭଲ ଝାଡ଼ ଲାଇଟ୍, ସମ୍ବଲପୁରୀ ବାଜା, ରାଜାରାଣୀ, କଳାଘୋଡ଼ା, ଧଳାଘୋଡ଼ା, ଷଣ୍ଢ ଏକହଳ, ଏହିପରି ବିରାଟ ପଟୁଆରରେ ଠାକୁର ମାନେ ଭୋର ୪ଟାରେ ଲିଙ୍ଗରାଜ ମନ୍ଦିର ପହଞ୍ଚନ୍ତି । ଏଥିରେ ସ୍ଥାନୀୟ ଯୁବକ (ବିଶେଷତଃ ଲିଙ୍ଗରାଜଙ୍କ ସେବକ ମାନେ) ପୂର୍ଣ୍ଣ ସହଯୋଗ କରନ୍ତି । ରବି ନାରାୟଣ ପାତ୍ର ଏହି ପ୍ରସେସନ୍ ପାଇଁ, ବାଜା ଲାଇଟ୍ ପ୍ରଭୃତିର ଦାୟିତ୍ୱ ନେଇ ବୁଝାବୁଝି କରେ । ମୋର କାମ ହେଲା ଚାନ୍ଦା ଆଦାୟ କରିବା ଏବଂ ଅନ୍ୟ ସବୁ କାମରେ ମୋ ଦ୍ୱାରା ଯାହା ହୋଇପାରିବ ସାହାଯ୍ୟ କରେ ।

**ଡଃ ହରେକୃଷ୍ଣ ମହତାବଙ୍କ ଜୟନ୍ତୀ :-**

ବହୁ ବର୍ଷ ପୂର୍ବରୁ କଟକରେ ମହତାବ ବାବୁଙ୍କର ଜୟନ୍ତୀ ପାଳନ କରାଯାଉଛି । ଭୁବନେଶ୍ୱରରେ ଏକାମ୍ର ନିବାସରେ ମହତାବ ବାବୁ ରହିବା ପରେ ଭୁବନେଶ୍ୱରରେ ମହତାବ ବାବୁଙ୍କ ଜୟନ୍ତୀ ପାଳନ କରାଯାଉଅଛି । ସୁରେଶ କୁମାର ରାଉତରାୟ ପୂର୍ବତନ ମନ୍ତ୍ରୀ, ସମସ୍ତ ଦାୟିତ୍ୱ ନେଇ କରୁଛନ୍ତି । ୧୯୭୬ ମସିହା କଥା - ଏମରଜେନ୍ସି ବେଳ, ମହତାବ ବାବୁ ଜେଲରେ । ଓଡ଼ିଶାର ବଡ଼ ବଡ଼ ନେତା ବି ଜେଲରେ । ସୁରବାବୁଙ୍କୁ ପୋଲିସ୍ ଖୋଜୁଥାଏ । ମୁଁ, ଓଡ଼ିଶାର ସ୍ୱନାମଧନ୍ୟ କଂଗ୍ରେସ ନେତା ଓଡ଼ିଶାର ପୂର୍ବତନ ମନ୍ତ୍ରୀ ପବିତ୍ର ମୋହନ ପ୍ରଧାନ, ଆଉ ୩/୪ ଜଣ ଓଡ଼ିଶାର ନେତା (ନାଁ ମନେ ପଡୁନାହିଁ) ଏକାମ୍ର ନିବାସରେ ଥିବା ଗୋଟିଏ ଗଛତଳେ ବସି ମହତାବଙ୍କ ଜୟନ୍ତୀ ପାଳନ କଲୁ ।

ବର୍ତ୍ତମାନ କେହି ବିଶ୍ୱାସ କରୁ ବା ନକରୁ ମୁଁ ଭୁବନେଶ୍ୱର ଏନ୍.ଏ.ସି. ଚେୟାରମ୍ୟାନ୍ ଥିଲା ବେଳେ କାହାରି ଠାରୁ ଚାକିରି ଦେଇ କାମ କରିବାକୁ ଠିକାଦାର ଠାରୁ କେବେ ହେଲେ ପଇସା ନେଇନାହିଁ । ଚେୟାରମ୍ୟାନ୍

ହିସାବରେ ଯାହା ଭତ୍ତା ପାଏ ସେ ଟଙ୍କା ମଧ୍ୟ ବାହାରେ ବାହାରେ ଖର୍ଚ୍ଚ ହୋଇଯାଏ । ଘରକୁ କିଛି ଆଣେ ନାହିଁ । ମୁଁ ଯାହା ଘର ଭଡ଼ା ପାଏ ଏବଂ ବିଲରୁ ଯାହା ଧାନ ଆସେ ତାକୁ ବିକ୍ରୟ କଲେ ମୋର ଛୋଟ କୁଟୁମ୍ବ ପାଇଁ (ମୋର ଗୋଟେ ପୁଅ ରବୀନ୍ଦ୍ର, ଗୋଟେ ଝିଅ ରତ୍ନମଣି) ଯଥେଷ୍ଟ ।

ମହତାବ ବାବୁ ଜେଲରୁ ଆସିବା ପରଠାରୁ ଭଲ ଭାବରେ ଭୁବନେଶ୍ୱରରେ ମହତାବ ବାବୁଙ୍କ ଜୟନ୍ତୀ ପାଳନ କରାଯାଉଅଛି । ସୁରେଶ କୁମାର ରାଉତରାୟ ପୂର୍ଣ୍ଣ ଦାୟିତ୍ୱ ନେଉଛନ୍ତି । ମୁଁ ଚେୟାରମ୍ୟାନ୍ ଥିବାବେଳେ ଜୟନ୍ତୀ ଦିନ ରାତିରେ ବଡ଼ଦେଉଳବାଙ୍କରେ ଯେଉଁ ଭଜନ ସମରୋହ ହୁଏ ସେଥିପାଇଁ ଏନ୍.ଏ.ସି. ର ଓଭରସିଅର ମାନଙ୍କ ଜରିଆରେ ଠିକାଦାର ମାନଙ୍କ ଠାରୁ କିଛି କିଛି ଚାନ୍ଦା ଆଣି ଦିଏ । ଏହା ବ୍ୟତୀତ ମୁଁ କୌଣସି ବାବଦରେ କେବେ ହେଲେ ଚାନ୍ଦା ଆଦାୟ କରିନାହିଁ । ଆଜି ପର୍ଯ୍ୟନ୍ତ ମୁଁ ମହତାବଙ୍କ ଜୟନ୍ତୀ କମିଟିରେ ଅଛି ।

**ଏକାମ୍ର ସେବା ସଂଘ :-**

ଭୁବନେଶ୍ୱରର କେତେଜଣ ବିଶିଷ୍ଟ ଭଦ୍ରଲୋକ ଏବଂ ଭଦ୍ର ମହିଳାଙ୍କୁ ନେଇ ଏହି 'ଏକାମ୍ର ସେବାସଂଘ' ତା ୧.୭.୧୯୯୮ ରେ କରାଗଲା । ସୋସାଇଟି ଆକ୍ଟ ଅନୁସାରେ ରେଜିଷ୍ଟ୍ରେସନ୍ କରାଗଲା । ରେଜିଷ୍ଟ୍ରେସନ୍ ନଂ ୨୨୬୫୭, ୧୯୯୯-୨୦୦୦ । ଏହି କମିଟିରେ ମୁଁ ସଭାପତି, ଶ୍ରୀଯୁକ୍ତ ପରେଶ ଚନ୍ଦ୍ର ଦାଶ କାର୍ଯ୍ୟକାରୀ ସଭାପତି, ସହକାରୀ ସଭାପତି ଶ୍ରୀମତୀ ବିଜୟଲକ୍ଷ୍ମୀ ସେନାପତି, ସମ୍ପାଦକ-ଜୟନ୍ତ ପଟ୍ଟନାୟକ, ଯୁଗ୍ମ ସମ୍ପାଦକ ବୀଣାପାଣି ସାହୁ, କୋଷାଧ୍ୟକ୍ଷା ଶ୍ରୀମତୀ ସୁଚେତା ରାଉତ, ସମାଜସେବୀ ନୀଳମଣି ମିଶ୍ର ପ୍ରଭୃତି ୧୫ ଜଣଙ୍କୁ ନେଇ କମିଟି ଗଢ଼ାଯାଇଛି ।

ପ୍ରତି ମାସର ପ୍ରଥମ ରବିବାର ଦିନ ଲିଙ୍ଗରାଜଙ୍କ ବେଢ଼ା ସଫା କରାଯାଉଛି । ଶିବରାତ୍ରରେ ଲିଙ୍ଗରାଜଙ୍କ ଗମ୍ଭିରା, ବେଢ଼ା ସଫା କରିବା, ସ୍କୁଲ ମାନଙ୍କରୁ ପିଲାମାନଙ୍କୁ ଆଣି ବିନ୍ଦୁସାଗର ଘାଟ ସଫା କରିବା, ଅଶୋକାଷ୍ଟମୀରେ ରଥଟଣା ବେଳେ ଥଣ୍ଡାଜଳ ବାଣ୍ଟିବା, ଶ୍ରାବଣ ମାସରେ ହଜାର ହଜାର ଭକ୍ତ ଲିଙ୍ଗରାଜ ମନ୍ଦିରକୁ ଆସି ପାଣି ଲାଗି କରନ୍ତି ଏବଂ

ଲିଙ୍ଗରାଜ ମନ୍ଦିର ବେଢ଼ା ବହୁତ ଅପରିଷ୍କାର କରନ୍ତି ଏହା ଆମ ଏକାମ୍ର ସେବାସଂଘର ଭଲେଣ୍ଟିୟର ମାନେ ସଫା କରନ୍ତି । ଏହାଛଡ଼ା ବସ୍ତିମାନଙ୍କରେ ଡାକ୍ତର ଏବଂ ଔଷଧ ନେଇ କ୍ୟାମ୍ପ କରିବା, ଔଷଧ ବାଣ୍ଟିବା, ଗରିବ ବୁଢ଼ାବୁଢ଼ୀମାନଙ୍କର ଭତ୍ତା ପାଇଁ ଫର୍ମ ଯୋଗାଇ ଦେବା ଏବଂ ସେମାନେ କିପରି ଭତ୍ତା ପାଇବେ ଚେଷ୍ଟା କରିବା ଏହିପରି ସ୍ୱେଚ୍ଛାସେବୀ କାମ ମାନ ଏକାମ୍ର ସେବାସଂଘ ତରଫରୁ କରାଯାଉଅଛି । ଏହି ସମସ୍ତ କାମ ସ୍ୱେଚ୍ଛାସେବୀ ନୀଳମଣି ମିଶ୍ର ଦାୟିତ୍ୱ ନେଇ କରାନ୍ତି ମୁଁ କେବଳ କିଛି କିଛି ଆର୍ଥିକ ସାହାଯ୍ୟ କରୁଅଛି । ମୋର ବୟସ ଦୃଷ୍ଟିରୁ ମୁଁ ଉପର ଲିଖିତ ସମସ୍ତ କାର୍ଯ୍ୟରେ ଯୋଗଦେଇପାରୁନାହିଁ ।

**ଥାଲାସିମିଆ :-**

ଏହି ରୋଗ ବିଷୟରେ ଏବଂ ଏହି ରୋଗର ଚିକିତ୍ସା ବିଷୟକେହି କିଛି ଜାଣି ନଥିଲେ । ଏହି ରୋଗ ବାପାମା'ଙ୍କ ଜିନ୍ ଜନିତ ରକ୍ତଗତ ତ୍ରୁଟି । ବାପମା'ଙ୍କର ଜିନ୍‌ରେ ଦୋଷଥିଲେ ଜନ୍ମିତ ଶିଶୁ ମାନେ ଉପରୋକ୍ତ ରୋଗରେ ଆକ୍ରାନ୍ତ ହୋଇଥାନ୍ତି । ଏହା ଛିଆଁ ରୋଗ ନୁହେଁ । ଏହି ରୋଗରେ ଆକ୍ରାନ୍ତ ପିଲାମାନେ ୪/୫ ବର୍ଷ ବେଳକୁ ରକ୍ତହୀନତା ଯୋଗୁ ଶେତା ପଡ଼ିଯାନ୍ତି । ଯେତେ ପ୍ରକାର ଚିକିତ୍ସା କଲେ ମଧ ଆସ୍ତେ ଆସ୍ତେ ଦୁର୍ବଳ ହୋଇ ମରିଯାନ୍ତି । ଏହି ରୋଗର ଚିକିତ୍ସା ପାଇଁ ଓଡ଼ିଶାରେ ସେପରି ସୁବିଧା ନାହିଁ ।

ଭୁବନେଶ୍ୱର ପୌର ନିଗମ ଡାକ୍ତରଖାନାର ରେଡକ୍ରସ ରକ୍ତ ଭଣ୍ଡାର ଦାୟିତ୍ୱରେ ଡାକ୍ତର ରାଜେନ୍ଦ୍ର ମିଶ୍ର ଥିଲେ । ତାଙ୍କ ନିଷ୍ଠାପର କାର୍ଯ୍ୟ ଯୋଗୁ ଏହି ରକ୍ତଭଣ୍ଡାର ଓଡ଼ିଶାରେ ଖୁବ୍ ନାଆଁ କରିଥିଲା । ଡାକ୍ତର ମିଶ୍ର ବହୁତ ରକ୍ତ ସଂଗ୍ରହ କରି, କଟକ, ବୁର୍ଲା ଏବଂ ବ୍ରହ୍ମପୁର ରକ୍ତ ଭଣ୍ଡାରକୁ ବଳକା ରକ୍ତ ଦେଉଥିଲେ । ତାଙ୍କରି ଚେଷ୍ଟାରେ, ରୋଟାରିଆନ୍ ପରେଶ ଦାସ, ଅନ୍ୟ କେତେଜଣ ଭଦ୍ରବ୍ୟକ୍ତି, ଭଦ୍ର ମହିଳାଙ୍କୁ ନେଇ ସୋସାଇଟି ଗଢ଼ାଗଲା । ଏହି ଥାଲାସିମିଆ ସୋସାଇଟିର ନାମ 'ତାସ୍‌ୱାଲ୍ ଓଡ଼ିଶା' । ଅର୍ଥାତ୍ ଥାଲାସିମିଆ ଏବଂ ସିକ୍‌ଲସେଲ୍ ଏନିମିଆ ୱେଲଫେୟାର ସୋସାଇଟି ଓଡ଼ିଶା । ଏହା ସୋସାଇଟି ଆକ୍ଟ ଅନୁସାରେ ୧୯୯୮-୯୯ ପରେ ରେଜିଷ୍ଟ୍ରି

କରାଗଲା । ମୁଁ ଏହି ସୋସାଇଟିର ଆଜୀବନ ସଭ୍ୟ ଅଛି ଏବଂ ପ୍ରତ୍ୟେକ କାର୍ଯ୍ୟରେ ସହଯୋଗ କରୁଛି । ବର୍ତ୍ତମାନ ରୋଗୀ ସଂଖ୍ୟା ୫୦୦ ରୁ ଅଧିକ ଏବଂ ଆଜୀବନ ସଭ୍ୟ ସଂଖ୍ୟା ୨୫୦ । ଏହି ରୋଗର ଚିକିତ୍ସା ବହୁ ବ୍ୟୟ ସାପେକ୍ଷ । ପ୍ରତିମାସରେ ଏହି ରୋଗୀଙ୍କୁ ରକ୍ତ ଦେବାକୁ ହୁଏ । ବର୍ତ୍ତମାନ ବଲାଙ୍ଗୀର, କଳାହାଣ୍ଡି ଜିଲ୍ଲା ପ୍ରଭୃତି ବହୁ ଦୂର ଦୂରାନ୍ତରୁ ରୋଗୀମାନେ ଆସି ଚିକିତ୍ସା ହେଉଛନ୍ତି । କଟକରୁ ବିଶେଷଜ୍ଞ ମାନେ ଆସି ରୋଗୀମାନଙ୍କୁ ଦେଖୁଛନ୍ତି ।

ଏହି ଥାଲାସିମିଆ ସୋସାଇଟି ର ପ୍ରଥମେ ନଳିନୀମହାନ୍ତି ସମ୍ପାଦକ ଥିଲେ । ବର୍ତ୍ତମାନ ଡାକ୍ତର ବ୍ରଜେନ୍ଦ୍ର ମିଶ୍ର ସମ୍ପାଦକ ରହିଛନ୍ତି । ଡାକ୍ତର ମିଶ୍ର ମୋର ସମ୍ବନ୍ଧି ହେବେ (ବୋହୂର ପିଇସା) । ଦୂର ଦୂରାନ୍ତରୁ ଆସୁଥିବା ରୋଗୀ ଏବଂ ତାଙ୍କ ସଙ୍ଗରେ ଆସିଥିବା ବାପମା'ଙ୍କ ପାଇଁ ମୁଁ ଧର୍ମଶାଳାରେ ରହିବାକୁ ସୁବିଧା କରିଦିଏ । ବର୍ତ୍ତମାନ ମୁଁ ଏହିସବୁ ସେବା କାର୍ଯ୍ୟରେ ମୋ ଦିନ କଟାଉଛି ।

**ଅଖିଳ ଓଡ଼ିଶା ବ୍ରାହ୍ମଣ ମହାସଭା (ଓଡ଼ିଶା) ଏହା ସର୍ବଭାରତୀୟ ବ୍ରାହ୍ମଣ ମହାସଭାର ଅନୁବନ୍ଧିତ :-**

ଏହି ବ୍ରାହ୍ମଣ ମହାସଭାର ଭୁବନେଶ୍ୱରର ସଭାପତି ଭାବେ ମୋତେ ମନୋନୀତ କରିଛନ୍ତି ଏବଂ ମୁଁ ଭାରତ ବ୍ରାହ୍ମଣ ମହାସଭାର ଉପସଭାପତି ଅଛି । ପଣ୍ଡିତ ଧନେଶ୍ୱର ଆଚାର୍ଯ୍ୟ ସଭାପତି, ଶ୍ରୀ ବୈକୁଣ୍ଠ ନାଥ ମିଶ୍ର ମହାସଚିବ, ଶ୍ରୀ ବ୍ରଜବନ୍ଧୁ ଷଡଙ୍ଗୀ କୋଷାଧ୍ୟକ୍ଷ ଏବଂ ଶ୍ରୀ ଚିତ୍ତରଞ୍ଜନ ମିଶ୍ର ରାଜ୍ୟ ମୁଖପାତ୍ର ଏବଂ ପ୍ରତ୍ୟେକ ଜିଲ୍ଲାରେ ଓଡ଼ିଶା ବ୍ରାହ୍ମଣ ମହାସଭା ତରଫରୁ ଜିଲ୍ଲାମାନଙ୍କର ବ୍ରାହ୍ମଣ ମାନଙ୍କୁ ନେଇ ଗୋଟେ ଗୋଟେ କମିଟି ଗଢ଼ାଯାଇଅଛି । ଏହା ମଧ୍ୟରେ ମୁଁ ଫୁଲବାଣୀ, ବଉଦ, ଅନୁଗୁଳ, ଝାରସୁଗୁଡ଼ା ଜିଲ୍ଲା ମାନଙ୍କୁ ଯାଇ ବ୍ରାହ୍ମଣ ମହାସଭାରେ ଯୋଗ ଦେଇଥିଲି । ଭୁବନେଶ୍ୱର ର ଗୋଟିଏ ବ୍ରାହ୍ମଣ ମହାସଭା ଅଖିଳ ଓଡ଼ିଶା ବ୍ରାହ୍ମଣ ମହାସଭା ଅନୁବନ୍ଧନରେ ଗଢ଼ା ଯାଇଅଛି । ମୁଁ ସଭାପତି ପଣ୍ଡିତ ଚତୁର୍ଭୁଜ ରଥଶର୍ମା ସମ୍ପାଦକ ଅଛନ୍ତି । ପ୍ରାୟ ୫୦ଜଣ ବ୍ରାହ୍ମଣ ସଭ୍ୟ ଅଛନ୍ତି । ପ୍ରତି ମାସରେ ମିଟିଙ୍ଗ କରାଯାଇ ଭିନ୍ନ

ଭିନ ସମସ୍ୟା ନେଇ ଆଲୋଚନା କରାଯାଉଅଛି । 'କୃଷ୍ଣଚନ୍ଦ୍ର ସଂସ୍କୃତ ମହାବିଦ୍ୟାଳୟ'ରେ ପ୍ରତି ରବିବାର ବ୍ରାହ୍ମଣ ପିଲାମାନଙ୍କୁ ପୂଜାପାଠ ପ୍ରଭୃତି ଶିକ୍ଷା ଦେବାର ଚେଷ୍ଟା ଚାଲିଛି ।

**ଇନ୍‌ଟାକ୍ :-**

(INTACH) Indian National Trust for Art and Cultural Heritage ର ମୁଁ ଆଜୀବନ ସଭ୍ୟ ହୋଇଛି । ଏହାର ପ୍ରତ୍ୟେକ କାର୍ଯ୍ୟକ୍ରମରେ ମୁଁ ଯୋଗ ଦେଉଛି । କୋଟିତୀର୍ଥ ମନ୍ଦିର ନିକଟରେ ବହୁ ପ୍ରାଚୀନ ମନ୍ଦିର ରହିଅଛି । ଲିଙ୍ଗରାଜ ମନ୍ଦିରର ସମ ସାମୟିକ 'ଇନ୍ଦ୍ରେଶ୍ୱର ମନ୍ଦିର' । ଏହି ମନ୍ଦିରକୁ ରାସ୍ତା ନଥିଲା । ଗଛଲତାରେ ମନ୍ଦିରଟି ଘୋଡାଇ ହୋଇ ରହି ବାହାରକୁ ମନ୍ଦିର ଦେଖାଯାଉନଥିଲା । ଏହି ମନ୍ଦିରର ଉଚ୍ଚତା ପ୍ରାୟ ୫୦ ଫୁଟ୍ ହେବ । ଇନ୍‌ଟାକ୍ ତରଫରୁ ଏହି ମନ୍ଦିରଟିକୁ ମୁଁ ଦାୟିତ୍ୱ ନେଇ ପରିଷ୍କାର କରାଇଲି । ଚାରିପଟ ବେଢ଼ା ମରାମତି କଲି । ମନ୍ଦିରକୁ ଯିବାପାଇଁ ଗୋଟେ ନାଳ ପଡ଼େ, ଏହି ନାଳରେ ଦୁଇପଟେ ପଥର ଗଢ଼ି ୬ ଫୁଟ୍ ଲମ୍ବ ଦେଢ଼ଫୁଟ ମୋଟ ତିନିଫୁଟ ଚଉଡାର ଦୁଇଟି କନ୍ଦା ପଥର ଘାଟିକିଆରୁ ଆଣି ରାସ୍ତା କଲି ।

ରେଡକ୍ରସ, ଥାଲାସାମିଆ ସୋସାଇଟିର ଆଜୀବନ ସଭ୍ୟ ଅଛି । ଭୁବନେଶ୍ୱରର ବିଭିନ୍ନ ଉନ୍ନତି ମୂଳକ କାର୍ଯ୍ୟ ମାନଙ୍କରେ ସହଯୋଗ କରୁଛି । ଅବଶ୍ୟ ବେଶି ସମୟ କେଦାରନାଥ ଗବେଷଣା ପ୍ରତିଷ୍ଠାନ କାର୍ଯ୍ୟରେ ସମୟ ଦେଉଛି ।

***ଏବଂ ଶେଷରେ....***

ମୁଁ ସେପରି କିଛି ଲେଖାଲେଖି କରେ ନାହିଁ । କିନ୍ତୁ ପିଲାଦିନୁ ଅଭ୍ୟାସ ଅଛି ସବୁଦିନ ଖଣ୍ଡେ ଦିଖଣ୍ଡ ଦୈନିକ ସମ୍ବାଦପତ୍ର, ମାସିକ ପତ୍ରିକା, ଗପ, ଜୀବନୀ, ପ୍ରଭୃତି ପଢ଼ିବା । ଏପର୍ଯ୍ୟନ୍ତ ସେ ଅଭ୍ୟାସ ଅଛି । ମୋ'ର ସେପରି ସ୍ମରଣ ଶକ୍ତି ନଥିବାରୁ ସବୁକଥା ମନେ ରହେ ନାହିଁ । ୧୯୪୫ ବେଳକୁ ମାଟ୍ରିକ୍ ପାସ୍ କରି କୃଷି ଟ୍ରେନିଂ ନେଇ କୃଷି ବିଭାଗରେ ଚାକିରି କଲି । ଫାର୍ମ ଚାକିରି, ହଳଲ ଙ୍ଗଳ କଥା, ବିଲ ରୁଆ, ଧାନ କଟା ପ୍ରଭୃତି ବୁଝିଲି । ପଶା, ତାସ ଖେଳ ଜାଣେ ନାହିଁ । ରାତିରେ ସନ୍ଧ୍ୟାପରେ ପ୍ରାୟ ରାତି ୧୧ ପର୍ଯ୍ୟନ୍ତ ପଢ଼େ । ୧୯୫୭

ରୁ ୧୯୬୨ ପର୍ଯ୍ୟନ୍ତ ବ୍ଲକ୍‌ରେ କୃଷି ସଂପ୍ରସାରଣ ଅଫିସର ହେଲି । ମୋର ଅଭ୍ୟାସ ପ୍ରତିଦିନ ୫ଟାରେ ଉଠି ସକାଳ ସାତଟା ମଧ୍ୟରେ ନିତ୍ୟକର୍ମ ସାରି ଅନ୍ତତଃ ୧୫/୨୦ କିଲୋମିଟର ସାଇକେଲ୍‌ରେ ବୁଲି ପଞ୍ଚାୟତର ସରପଞ୍ଚ, ସେକ୍ରେଟେରୀ ଓ ଗ୍ରାମସେବକଙ୍କ ସଙ୍ଗେ ମିଶି କୃଷି କାର୍ଯ୍ୟ ଦେଖି ଏବଂ ଦିନ ଗୋଟେ ବେଳକୁ ଖାଇ ଅଳ୍ପ ସମୟ ବିଶ୍ରାମ କରି ବ୍ଲକ୍ ଅଫିସ୍‌ରେ ସନ୍ଧ୍ୟା ପର୍ଯ୍ୟନ୍ତ ଅଫିସ୍ କାମ କରେ । ରାତିରେ ପଢ଼ାପଢ଼ି କରେ । ଏହା ଥିଲା ମୋର ନିତିଦିନିଆ କାମ । ଅନ୍ୟ ଅଫିସର ମାନଙ୍କ ପରି ମୁଁ କେବେ ହେଲେ କାମରେ ଠକେ ନାହିଁ । ତେଣୁ ମୁଁ ଅଳ୍ପ ବର୍ଷ ଚାକିରିରେ ପ୍ରଥମେ ସବ୍‌ଓଭରସିୟର୍, ଓଭରସିୟର ବ୍ଲକ୍‌ର କୃଷି ସମ୍ପ୍ରସାରଣ ଅଫିସର (ସୁପରଭାଇଜର) ୧୯୬୨ ବେଳକୁ ବି.ଡି.ଓ. ରେ ପ୍ରମୋସନ ପାଇଥିଲି । କିନ୍ତୁ ଖୋର୍ଦ୍ଧା ବ୍ଲକ୍‌ରେ ୧୯୬୧/ ୬୨ ବେଳକୁ ବହୁତ ପରିଶ୍ରମ ଯୋଗୁଁ ମୋର ସ୍ୱାସ୍ଥ୍ୟ ଭାଙ୍ଗିଲା । ସାଂଘାତିକ ଶ୍ୱାସ ରୋଗରେ ପୀଡିତ ହେଲି । ବାଧ୍ୟ ହୋଇ ବହୁଦିନ ଛୁଟିନେଇ ଚିକିତ୍ସିତ ହେଲି । କିନ୍ତୁ ଶାରୀରିକ ପରିଶ୍ରମ କରିବାକୁ ଡାକ୍ତର ମନା କଲେ । ବାଧ୍ୟ ହୋଇ ୧୯୬୫ ବେଳକୁ 'ଇନ୍‌ଭାଲିଡ୍' ପେନସନ ନେଇ ଘରେ ରହିଲି ।

ଏହି ବହିରେ ମୁଁ ମୋ' ଜୀବନର ବହୁ ବିଷୟ ବର୍ଣ୍ଣନା କରିଛି । ବର୍ତ୍ତମାନ ମୋତେ ୮୫ ବର୍ଷ ଚାଲିଲା । ମୋର ଇଷ୍ଟଦେବୀ ମା ଦୁର୍ଗାଙ୍କ ଦୟାରୁ ଶେଷ ଜୀବନ ପର୍ଯ୍ୟନ୍ତ ଏହିପରି (ସୋସିୟାଲ୍ ୱାର୍କ) ସମାଜସେବା କରିବି ବୋଲି ମୋର ଦୃଢ଼ ବିଶ୍ୱାସ । ମୁଁ ଜାଣେ, ମଣିଷ ଜୀବନ ହସ-କାନ୍ଦ, ସୁଖ-ଦୁଃଖଭରା । ମୋ' ଜୀବନ ସେଥିରୁ ବାଦ୍‌ଯିବ କିପରି ? ଜୀବନର ସାୟାହ୍ନରେ କଥା ଓ ବ୍ୟଥାତକ ମନେପକାଇଲାବେଳେ ଆଖିରେ ଅନେକଥର ଲୁହ ଆପେ ଆପେ ଆସିଯାଇଛି । ଅବଶ୍ୟ ସବୁ ଲୁହ ଦୁଃଖ ବା ଶୋକର ଲୁହ ନୁହେଁ । ସେ ଲୁହରେ ଆନନ୍ଦର ପରିମାଣ ବି କିଛି କମ୍ ନୁହେଁ । ମନେପକାଇ ସବୁକଥା ଲେଖିପାରିଲି ନାହିଁ । ସେଇ ଦୁଃଖ ମନରେ ରହିଗଲା । ଯାହା ମନେପଡ଼ିଲା, ଯେତିକି ଲେଖିଲି ସେଥିରେ କିଛି ଖାଦ ନାହିଁ କି ଖୁଦ ନାହିଁ । ସବୁକଥା ଅଙ୍ଗେନିଭା କଥା । ମୋ' ପାଇଁ କେତେବେଳେ କଥା, ବ୍ୟଥା ହୋଇଯାଇଛି କେତେବେଳେ ବ୍ୟଥା ବି ହୋଇଯାଇଛି କଥା.... । ସେସବୁକୁ ଫେଣ୍ଟାଫେଣ୍ଟି କରି ଆଜି ଆପଣମାନଙ୍କୁ ଶ୍ରଦ୍ଧାର ସହ ସମର୍ପି ଦେଉଛି.....



ଜେଜେବାପାଙ୍କ ସହ ଶିଶୁ 'ଗୁଣନିଧି':୧୯୨୫ ମସିହା




ଗୁଣନିଧିଙ୍କ ପିତା ସ୍ୱର୍ଗତ ଗୋପୀନାଥ ମହାପାତ୍ର ଓ
ମାତା ସ୍ୱର୍ଗତା ରାଧିକା ଦେବୀ



ପତ୍ନୀ ଶ୍ରୀମତୀ ଚମ୍ପାବତୀଙ୍କ ସହ
ଶ୍ରୀଯୁକ୍ତ ଗୁଣନିଧି ମହାପାତ୍ର



ପାଠାଗାର ଉଦ୍‌ଘାଟନ ଉତ୍ସବରେ ତତ୍କାଳୀନ ମୁଖ୍ୟମନ୍ତ୍ରୀ
ଶ୍ରୀଯୁକ୍ତ ଜାନକୀ ବଲ୍ଲଭ ପଟ୍ଟନାୟକଙ୍କ ଗହଣରେ ଶ୍ରୀଯୁକ୍ତ ଗୁଣନିଧି ମହାପାତ୍ର



କେଦାରନାଥ ଗବେଷଣା ପ୍ରତିଷ୍ଠାନର ବାର୍ଷିକ ଉତ୍ସବରେ ତତ୍କାଳୀନ
ବିଧାୟକ ଶ୍ରୀଯୁକ୍ତ ସୁରେଶ କୁମାର ରାଉତରାୟ,
ବାଚସ୍ପତି ଶ୍ରୀଯୁକ୍ତ ଶରତ କୁମାର କରଙ୍କ ସହିତ ଶ୍ରୀଯୁକ୍ତ ଗୁଣନିଧି ମହାପାତ୍ର



କେଦାରନାଥଙ୍କ ଜୟନ୍ତୀ ଉତ୍ସବରେ ସଭାପତି ଶ୍ରୀଯୁକ୍ତ ଗୁଣନିଧି ମହାପାତ୍ର



ତା.୨୦.୦୪.୨୦୦୪ରେ ସମ୍ବର୍ଦ୍ଧିତ ପଣ୍ଡିତ ଶ୍ରୀ କ୍ଷେତ୍ରମୋହନ ଶତପଥୀଙ୍କୁ
ଏକାମ୍ର ସମ୍ମାନ ପ୍ରଦାନ ଅବସରରେ ମନ୍ତ୍ରୀ ଶ୍ରୀ ବିଶ୍ୱଭୂଷଣ ହରିଚନ୍ଦନ ଓ
ସଭାପତି ଶ୍ରୀ ଗୁଣନିଧି ମହାପାତ୍ର



ଜୟଦେବଙ୍କ ଜନ୍ମସ୍ଥାନ କେନ୍ଦୁଲିରେ ଅନୁଷ୍ଠାନର
କର୍ମକର୍ତ୍ତାଙ୍କ ଗହଣରେ ସଭାପତି ଶ୍ରୀଯୁକ୍ତ ଗୁଣନିଧି ମହାପାତ୍ର





ମହାନଦୀ ଟାପୁ,
ପ୍ରାଚୀନକୀର୍ତ୍ତି ବୈଦ୍ୟନାଥର
ସିଂହନାଥ ମନ୍ଦିର ନିକଟରେ
କେଦାରନାଥ
ଗବେଷଣା ପ୍ରତିଷ୍ଠାନର
ସଭ୍ୟମାନଙ୍କ ସହିତ
ଶ୍ରୀଯୁକ୍ତ ଗୁଣନିଧି ମହାପାତ୍ର